# ବିଚିତ୍ରାନନ୍ଦ-ଭୁବନାନନ୍ଦ

ସଂପାଦନା

**କିଶୋରୀ ଚରଣ ଦାସ**

**ପ୍ରକାଶକ**

ବିଚିତ୍ରାନନ୍ଦ-ଭୁବନାନନ୍ଦ ଶତବାର୍ଷିକୀ ସ୍ମୃତି କମିଟି

୧୦୨, ସୂର୍ଯ୍ୟ ନଗର

ଭୁବନେଶ୍ୱର–୭୫୧୦୦୩

# ସୂଚୀ




**SMT. RAJESHWARI TANDON**
Social Secretary to PM

Prime Minister's Office
New Delhi-110011

July 8, 1985

Dear Shri Mohanty,

The Prime Minister Shri Rajiv Gandhi is pleased to know that the Bichitrananda Bhubanananda Centenary Memorial Committee proposes to honour the memory of Shri Bichitrananda Das and Shri B. Das in its Souvenir of July, 1985. He sends his good wishes to the Committee on this occasion.

Yours sincerely
**Rajeshwari Tandon**

SHRI H. K. MOHANTY
102, Surya Nagar
Bhubaneswar
Orissa




**DR. BAL RAM JAKHAR**
SPEAKER, LOK SABHA

NEW DELHI
Dated : 18-7-1985

## MESSAGE

I am glad to learn that Bichitrananda Bhubanananda Centenary Memorial Committe is proposing to bring out a Souvenir to commemorate the birth centenary of the two illustrious twin brothers of Orissa, Swami Bichitrananda Das and Shri Bhubanananda Das. Both of them had made glorious contributions to the cause of freedom of the country and excelled in their respective fields. Swami Bichitrananda emerged as a legal luminary and Bhubanananda rose to be a member of the Central Legislature and later of the Parliament, thus, substantially contributing to the nation's welfare. Their ideas and principles of universal brotherhood and emancipation of the poor and the down-trodden had earned for them universal acclaim. Their role in the creation and unification of the present Orissa State will be ever remembered by the people of Orissa and elsewhere in the country.

I wish the Centenary celebrations every success.

(BAL RAM JAKHAR)

## ସଂପାଦକୀୟ

# ପ୍ରଥମ ନିବେଦନ

ସ୍ମରଣିକାର ଆରମ୍ଭରେ ମୋତେ କିଛି କହିବା ପାଇଁ ନିର୍ଦ୍ଦେଶ ଦିଆ ହୋଇଛି, ଯେହେତୁ ମୁଁ ଏହାର ସଂପାଦକ । ମୁଁ ସଂପାଦକ ହେବା ପାଇଁ ରାଜି ନ ଥିଲି, କାରଣ ମୁଁ "ସାନ" ଜାଆଁଳା ଭାଇଙ୍କର ଜାମାତା, ଏବଂ ମୋ ପକ୍ଷରେ ସେମାନଙ୍କର ଗୁଣଗାନ କରିବା ଅଶୋଭନୀୟ ବୋଲି କେତେକେ ଭାବି ପାରନ୍ତି । ତଥାପି ମୁଁ ଲେଖକର ଆଖ୍ୟା ବହନ କରିଥିବାରୁ ମୋର ଆପତ୍ତି ଶୁଣାଗଲା ନାହିଁ, ଏବଂ ମୁଁ ମୁଖ୍ୟମନ୍ତ୍ରୀ ଜାନକୀବାବୁ, ଡକ୍ଟର ମହତାବ, ଶ୍ରୀଯୁକ୍ତ ସୁରେନ୍ଦ୍ର ଦ୍ୱିବେଦୀ ଆଦି ବରିଷ୍ଠ ନେତା ଓ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଆଦେଶ ଅମାନ୍ୟ କରି ପାରିଲି ନାହିଁ । ଯାହାହେଉ ମୋର ସୌଭାଗ୍ୟ ଯେ ଏହି ସଂକଳନଟିକୁ ପ୍ରକାଶ କରାଇବା କାମରେ ମୁଁ ଶ୍ରୀଯୁକ୍ତ ପ୍ରଦ୍ୟୁମ୍ନ ବଳ ଓ ଶ୍ରୀଯୁକ୍ତ ସୌମ୍ୟରଞ୍ଜନ ପଟ୍ଟନାୟକଙ୍କୁ ସହକର୍ମୀ ରୂପେ ପାଇଛି । ସେମାନଙ୍କର ପ୍ରଭୂତ ଜ୍ଞାନ, ଅଭିଜ୍ଞତା ଏବଂ ଉତ୍ସାହ ବିନା ସଂକଳନଟି ଆଗେଇ ପାରି ନ ଥାଆନ୍ତା, ସଫଳ ହେବା ଦୂରର କଥା । ଏହା ଛଡ଼ା ସମିତିର ସାଧାରଣ ସଂପାଦକ ଶ୍ରୀ ହେମନ୍ତ କୁମାର ମହାନ୍ତି ଓ କାର୍ଯ୍ୟକାରିଣୀ ସମିତିର ସମସ୍ତ ସଦସ୍ୟ ଏଇ କାମଟିକୁ ତୁଲାଇବାରେ ସବୁ ପ୍ରକାର ସାହାଯ୍ୟ କରିଛନ୍ତି । ସେମାନଙ୍କୁ ମୋର ଆନ୍ତରିକ ଧନ୍ୟବାଦ । ସର୍ବୋପରି ଯେଉଁମାନେ ଆମର ଅନୁରୋଧ ରକ୍ଷା କରି ଅଥବା ସ୍ୱତଃପ୍ରଣୋଦିତ ହୋଇ ଦୁଇଭାଇଙ୍କ ବିଷୟରେ ଦି' ପଦ ଲେଖି ପଠାଇବାର

ଶ୍ରମସ୍ୱୀକାର କରିଛନ୍ତି, ସେମାନଙ୍କୁ ମୁଁ ସ୍ମାରକ ସମିତି ତରଫରୁ ଗଭୀର କୃତଜ୍ଞତା ଜଣାଉଛି । ସେଇମାନେ ହିଁ ଏହି ବିସ୍ମୟକର ଦୁଇ ଭାଇଙ୍କୁ ଏକବିଂଶ ଶତାବ୍ଦୀ ଆଡ଼କୁ ମୁହାଁଇଥିବା କ୍ଷୁବ୍ଧ, ଚଞ୍ଚଳ, ବିଚକ୍ଷଣ ଜନତାର ପଟୁଆର ଆଗରେ ଠିଆ କରେଇ କହିପାରିଛନ୍ତି—ଦଣ୍ଡେ ରୁହନ୍ତୁ ଆଜ୍ଞା । ଆପଣଙ୍କ ବାପ ଅଜା ବେଳର ଏଇ ଦୁଇଜଣଙ୍କୁ ଟିକିଏ ଦେଖନ୍ତୁ, ଚିହ୍ନନ୍ତୁ । ଆପଣଙ୍କୁ ସୁଖ ଲାଗିବ । ତା'ପରେ ବୋଧହୁଏ ଆପଣ ଅଧିକ ଆନନ୍ଦରେ (ଅବା ଊଣା କ୍ଲେଶ ସହକାରେ) ଶତାବ୍ଦୀ ସୀମାକୁ ଛୁଇଁ ପତାକା ପୋତି ଆଗେଇ ଯାଇ ପାରିବେ । ସେଇଠୁଁ ତ ଯାତ୍ରାର ଆରମ୍ଭ......

ମୁଁ କେବଳ ସେଇମାନଙ୍କ ଅକୁହା ଦରକୁହା କଥାକୁ ମୂଳରୁ କହିବାକୁ ବସିଛି, ଆପଣଙ୍କର ସୁବିଧା ପାଇଁ । ସ୍ମରଣିକାଟିକୁ ପଢ଼ିଗଲେ ଆପଣ ଲାଭବାନ୍ ହେବେ, ଏପରି କହିବା ଧୃଷ୍ଟତା ମାତ୍ର । କାରଣ ଆପଣ ନିଜର ତଥା ଦେଶର ଓ ଦଶର ଭଲମନ୍ଦ ବେଶ୍ ବୁଝିଛନ୍ତି । ଅତୀତରେ କିଏ କଣ କରିଥିଲେ, ତା'ର ଖିଅ ତ ଆପେ ଆପେ ଆପଣଙ୍କ ହାତକୁ ଆସି ଯାଇଛି । ଦେଶ ସ୍ୱାଧୀନ ହୋଇଛି । ତା'ର ଏଗାର ବର୍ଷ ପୂର୍ବରୁ ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀମାନେ ବେଶୀ ଭାଗ ଏକାଠି ହୋଇଗଲେଣି ଏବଂ ଆପଣା ପ୍ରଦେଶଟିଏ ପାଇଲେଣି ହାତରେ (ଆଜି ସୁଦ୍ଧା ମେଦିନୀପୁର, ଖରସୁଆଁ, ସରେଇକଳା, ସିଂହଭୂମି, ମଞ୍ଜୁଷା, ତରଳା ଆଦି ଅଞ୍ଚଳର ଭାଇଭଉଣୀଙ୍କ ପାଇଁ ଅବଶ୍ୟ ପ୍ରାଣ କାନ୍ଦୁଛି, ସେ କଥା ଭିନ୍ନ) । ଏବେ ଉତ୍କଳୀୟ କଳା ଓ ସଂସ୍କୃତି ସର୍ବଭାରତୀୟ କ୍ଷେତ୍ରରେ ଝଟକୁଛି, ଭାରତର ନାନା ସରକାରୀ ଓ ବେସରକାରୀ କ୍ଷେତ୍ରରେ ଆମ ପିଲାମାନେ କେବଳ ମାଡ଼ିଗଲେଣି ନୁହେଁ, ନାଆଁ କମଉଛନ୍ତି, ଇତ୍ୟାଦି ଇତ୍ୟାଦି । ଆଉ ଯାହା ବାକୀ ଅଛି, ଅନେକ ବାକୀ ଅଛି । ତାକୁ କେମିତି ପୂରଣ କରିବାକୁ ହେବ ତା'ର ହିସାବ କଣ ଆପଣ ଜାଣି ନାହାନ୍ତି ଯେ ଆପଣଙ୍କୁ କିଏ କହିବ ଅମୁକଙ୍କ ବିଷୟରେ ପଢ଼ନ୍ତୁ, ଲାଭ ମିଳିବ ସେଥିରୁ ?

ଆପଣ ସବୁ ଜାଣନ୍ତି । ଦିଗ୍‌ବଳୟକୁ ଛୁଇଁବା ପାଇଁ ଅସ୍ଥିର ହେଲେଣି ଆପଣ, ତଥାପି ଆପଣଙ୍କର ବହୁମୂଲ୍ୟ ସମୟ ନଷ୍ଟ କରି ଏଇ ଦୁଇଜଣଙ୍କୁ ଚିହ୍ନିବା ପାଇଁ ଆମର ବିନୀତ ନିବେଦନ, କାରଣ ଆପଣଙ୍କୁ ସୁଖ ଲାଗିବ । ତେଣିକି ଚଲାପଥ ଏତେଟା ବାଧିବ ନାହିଁ ବୋଲି ଆମର ବିଶ୍ୱାସ ।

ସୁଖ ଲଗିବ ଏଇଥି ପାଇଁ ଯେ ଏମାନଙ୍କ ଚରିତ୍ରର ଅଦ୍‌ଭୁତ ଅଥଚ ଅନ୍ତରଙ୍ଗ ବଡ଼ପଣ ଆପଣଙ୍କୁ ଛୁଇଁବ । ହୁଏତ ଆଚ୍ଛନ୍ନ କରିବ । ଭଲ ଗଳ୍ପ ଉପ-ନ୍ୟାସଟିଏ ପଢ଼ିସାରିଲା ପରେ ଯେପରି ମନେ ହୁଏ— ଯେ ଏଇ ଚରିତ୍ର ଗୁଡ଼ିକ କେତେ ବାସ୍ତବ, ହେଲେ ସାଧାରଣ ନୁହଁନ୍ତି, କେତେ ମହାନ୍, ହେଲେ ଦେବତା ନୁହଁନ୍ତି, କେତେ ନିଜର, ହେଲେ ନିଊନ ନୁହଁନ୍ତି ! ଆମ ଭିତରୁ ଆଉ ଥୋକେ ଏମିତି ବାହାରିଲେ କେଡ଼େ ମଜା ହୁଅନ୍ତା ! କେତେ ରଙ୍ଗ, ସଙ୍ଗୀତ ଓ ଉଲ୍ଲାସରେ ଆମ ଯାତ୍ରା ମୁଖର ହୋଇ ଉଠନ୍ତା, ପାଦରେ ନାଗଫେଣୀଆ କଣ୍ଟା ପଶିଗଲେ ତା'କୁ ଚଟ୍‌କିନି କାଢ଼ି ଦେଇ ହୁଅନ୍ତା, କେଉଁ ଦାମ୍ଭିକ କର୍ତ୍ତୃପକ୍ଷ ନାଲି ଆଖି ଦେଖେଇଲେ ଆମେ ତା' ଆଡ଼କୁ ଭିଡ଼ି ନ ଯାଇ ତା'ର ଅସ୍ତିତ୍ୱକୁ ହସି ଉଡ଼େଇ ଦେଇ ପାରନ୍ତେ... ଆଦର୍ଶର ସରଗଶଶୀ ଅବିଳମ୍ବେ ଆମ ହାତକୁ ଖସି ପଡ଼ନ୍ତା ପରା !

ଏହେତୁ ଏ ଦୁଇ ଭାଇ ଦେଶ ଏବଂ ଓଡ଼ିଆ ଜାତି ପାଇଁ ଯାହାସବୁ କରିଗଲେ, ତାହା ବିରାଟ, ବ୍ୟାପକ ଓ ଚିରସ୍ମରଣୀୟ ହୋଇଥିଲେ ମଧ୍ୟ, ସେମାନଙ୍କର ଦାୟାଦ ଅର୍ଥାତ୍ ଆମ ପାଇଁ ଓ ଆପଣମାନଙ୍କ ପାଇଁ ଅଧିକ ଉତ୍‌ସାହଜନକ ହେଉଛି ସେମାନଙ୍କର ଆକର୍ଷଣୀୟ ବ୍ୟକ୍ତିତ୍ୱ । ଯାହା ଆଜି-କାଲିର କ୍ଷୁବ୍‌ଧ, ଚଞ୍ଚଳ, ବିଚକ୍ଷଣ ନେତା-ବ୍ୟବସାୟୀ-ବୁଦ୍ଧିଜୀବୀର କାମ୍ୟ, କିନ୍ତୁ ସହଜେ ମିଳେ ନାହିଁ । ଭୟ ହୁଏ ଯେ ବ୍ୟକ୍ତିତ୍ୱ ଆଡ଼କୁ ନଜର ଦେବାକୁ ବେଳ ନାହିଁ, କାରଣ ଟିକିଏ ଅନ୍ୟମନସ୍କ ହେଲେ ଆରକ କାଳେ ଟପିଯିବ ମୋତେ !

ଏମାନଙ୍କ କୃତି ସଂପର୍କରେ ଦି'ପଦ କହିଦିଏ, ଯାହା ଆପଣ ସ୍ମର-ଣିକାର ପର ପୃଷ୍ଠାମାନଙ୍କରେ ବିଶଦ ଭାବରେ ବିଭିନ୍ନ ବରେଣ୍ୟ ନେତା, ଶିଷ୍ୟ, ସହକର୍ମୀ ତଥା ପରିବାରର ଅନ୍ୟମାନଙ୍କ ମୁହଁରୁ ଶୁଣିବାକୁ ପାଇବେ :

ଏ ଦୁଇଜଣ ଆଜିକୁ ଶହେ ବର୍ଷ ତଳେ ମେ ୧୪, ୧୮୮୫ ମସିହାରେ ସାବିତ୍ରୀ ଅମାବାସ୍ୟା ଦିନ ପୁରୀଜିଲ୍ଲା ବାଲିପାଟଣା ଥାନା ଅନ୍ତର୍ଗତ କୁରୁଂଜିପୁର ଗ୍ରାମରେ ଜନ୍ମ ହୋଇଥିଲେ । କେତୋଟି ମୁହୂର୍ତ୍ତର ବ୍ୟବଧାନ ଦୁଇଭାଇଙ୍କ ମଧ୍ୟରେ, ତେଣୁ ଦୁହେଁ ଜାଆଁଳା ହେଲେ ମଧ୍ୟ ଜଣେ "ବଡ଼", ଅନ୍ୟଜଣକ "ସାନ" । ବାପା ଶ୍ରୀ ରାମଚନ୍ଦ୍ର ଦାସ ସେ ଅଞ୍ଚଳର କାନଗୋଇ ଥିଲେ ।

ପଦମର୍ଯ୍ୟାଦା ଛଡ଼ା ତାଙ୍କ ଦାନଧର୍ମ ଯୋଗୁଁ ମଧ୍ୟ ସେ ସ୍ଥାନୀୟ ପ୍ରତିଷ୍ଠା ଲାଭ କରି ପାରିଥିଲେ । କିନ୍ତୁ ଦୁଇଭାଇଙ୍କ ପୃଷ୍ଠଭୂମିରେ ପୈତୃକ ଧନମର୍ଯ୍ୟାଦାର ଏପରି କିଛି ପୁଞ୍ଜି ନ ଥିଲା, ଯାହା ବଳରେ ସେମାନେ ଗୋଠଖଣ୍ଡିଆ ହେବାର ସାହସ କରି ପାରିବେ ବୋଲି କୁହାଯିବ । ହେଲେ ସେମାନେ ଲବକୁଶ ପରା, ରାମଚନ୍ଦ୍ରଙ୍କୁ ବଳିଯିବେ ନାହିଁ କେମିତି ?

ଦୁଇ ଭାଇ ଆଗ ପଛ ହୋଇ ଫାଷ୍ଟ୍ ଡିଭିଜନରେ ମାଟ୍ରିକ୍ ପାସ୍ କଲେ । ସେଇଠୁଁ ଜଣେ କଲିକତାରୁ ବି. ଏ. ଓ ଆଇନ୍ ପାସ୍ କରି ଓକିଲାତି କଲେ, ଅନ୍ୟ ଜଣକ ଦେଶ ବିଦେଶରୁ ଇଂଜିନିଅରିଙ୍ଗ୍ ଡିଗ୍ରୀ ନେଇ ଇଂଜିନିୟର ହେଲେ । ଯଥାକ୍ରମେ ଦୁହେଁ ରାଜନୀତିରେ ଯୋଗ ଦେଇ ଯାହା କରିବାର କଲେ । ଏଇ ହେଲା ସେମାନଙ୍କ ଜୀବନର ସାମାନ୍ୟ କଥନ । ଏଇ ଭଳି ବାଟ ଦେଇ ସେବେଳର ତଥା ଆଜି କାଲିର କେତେ ଲୋକ ଯାଇଛନ୍ତି, ସଂସାର କରି ଆରାମରେ ଅବସର ନେଇ ଧରାପୃଷ୍ଠରୁ ବିଦାୟ ନେଇଛନ୍ତି । କିନ୍ତୁ ଏଇ ଦୁଇ ଭାଇ କେତେ ଅମଡ଼ା ମାଡ଼ିଗଲେ । ଲବ ଦରିଆ ପାରିହୋଇ ଦେଶ ବିଦେଶ ଖେଦି ଗଲେ । କୁଶ ଘରେ ରହିଲେ । ହେଲେ ଦୁହିଁଙ୍କୁ ଦୁହେଁ ଏଭଳି କାମ କରିଗଲେ, ଯାହାଫଳରେ ଆଜି ଆଶ୍ଚର୍ଯ୍ୟ ହେବାକୁ ପଡୁଛି ଯେ କେଉଁ ମଫସଲର ସାଧାରଣ ପରିବାରରୁ ବାହାରି ଏମାନେ ଏତେ ବିଭିନ୍ନ ଦିଗରେ ଏତେ ଗୁଡ଼ାଏ କାମରେ ହାତ ଦେଇ ନିଜର ଓ ଦେଶର ମାନ ବଢ଼ାଇ ପାରିଲେ ।

ସ୍ୱାମୀ ବିଚିତ୍ରାନଂଦ କେବଳ ଓକିଲାତି କଲେ ନାହିଁ; ମେଧା, ଜ୍ଞାନ ଓ ଅଧ୍ୟବସାୟ ବଳରେ ବ୍ୟବସାୟର ଶୀର୍ଷରେ ପହୁଞ୍ଚିଲେ, ଏବଂ ଅନ୍ୟାନ୍ୟ ସମ୍ମାନ ସମେତ ସ୍ୱାଧୀନୋତ୍ତର ଓଡ଼ିଶାର ପ୍ରଥମ ଆଡ୍‌ଭୋକେଟ୍ ଜେନେରାଲ୍ ହେଲେ । କେବଳ ଓକିଲାତି କଲେ ନାହିଁ, ନିଜ ଜୀବନରେ ପ୍ରମାଣ କରିଦେଲେ ଯେ (କ) ଏହି ବ୍ୟବସାୟରେ ବଡ଼ ହେବାକୁ ହେଲେ ଦିନରାତି ଖଟିବାକୁ ପଡ଼ିବ, ତେଣୁ କୌଣସି ଜାତୀୟ ବା ସାମାଜିକ ଉଦ୍ୟମରେ ବୁଡି ଯାଇ ହେବ ନାହିଁ; ଏକଥା ମିଛ, (ଖ) ଏହି ବ୍ୟବସାୟରେ ବଡ଼ଲୋକ ହେବାକୁ ହେଲେ ଦରିଦ୍ରମାନଙ୍କ ପ୍ରତି ଦୟା ଦେଖାଇବା ଛଡ଼ା ଆଉ କିଛି କରି ହେବ ନାହିଁ; ଏ କଥା ମିଛ, ଏବଂ (ଗ) ଏହି ବ୍ୟବସାୟରେ ମିଛର ଆଶ୍ରୟ ନେବାକୁ

ପଡ଼ିବ, ଏକଥା ମିଛ । ଓକିଲତିକୁ ବଜାୟ ରଖି ମଧୁବାବୁଙ୍କ ନେତୃତ୍ୱରେ ଦେଶ ମିଶ୍ରଣ କାମରେ ଝାଂପ ଦେଲେ, ଗାନ୍ଧୀଜୀଙ୍କ ପ୍ରେରଣାରେ ସ୍ୱାଧୀନତା ସଂଗ୍ରାମରେ ଲଢ଼ିଲେ ଏବଂ ଶହ ଶହ ଲୋକଙ୍କୁ ଅର୍ଥ, ବୁଦ୍ଧି ଓ ନେତୃତ୍ୱ ଯୋଗାଇ ଦେଶର ଦୁର୍ଦ୍ଦିନରେ ଏକ ବିରାଟ ଆଲୋକବର୍ତ୍ତିକାର ଭୂମିକା ନିଭାଇଲେ । ଯଥାକ୍ରମେ ବିଧାନ ସଭାରେ ଏବଂ କୋର୍ଟରୁମ୍‌ରେ ଏକାଧାରରେ ଭାବଗର୍ଭକ ତଥା ଭାବାକୁଳ ଯୁକ୍ତିର ଜାଲରେ ବାଂଧିଦେଲେ ଅନ୍ୟମାନଙ୍କୁ ଏବଂ ଯଶସ୍ୱୀ ହେଲେ । ଅଥଚ ଯେତିକି ବଡ଼ଲୋକ ହେଲେ ସେତିକି ଗରିବ ନ ହେବା ଯାଏଁ ତାଙ୍କ ମନ ଶାନ୍ତ ହେଲା ନାହିଁ । ଦୁଃଖୀ ରଂକୀଙ୍କଠାରୁ ଆରମ୍ଭ କରି ଅଳ୍ପବିତ୍ତ, ମଧ୍ୟବିତ୍ତ, ପାତ୍ର ଅପାତ୍ର, କୁକୁର ବିଲେଇ କେହି ତାଙ୍କ ଦାନରୁ ବଂଚିତ ହେଲେ ନାହିଁ । ବନ୍ୟାକ୍ଳିଷ୍ଟ, ଅନାଥ, କୁଷ୍ଠରୋଗୀ ଆଦି ସମାଜର ଦୀନହୀନ ଦଳିତଙ୍କ ସେବାରେ ବ୍ରତୀ ହୋଇ ଓଡ଼ିଶାର ପ୍ରଥମ ଅନାଥାଶ୍ରମ ବସାଇବା ଛଡ଼ା ନିଷ୍ଠା ଓ ତ୍ୟାଗର ଏଭଳି ପରାକାଷ୍ଠା ଦେଖାଇଲେ ଯେ ଠକ୍କର ବାପ୍‌ପାଙ୍କ ଦ୍ୱାରା "ସ୍ୱାମୀଜୀ" ଉପାଧି ଲାଭ କଲେ । ଯେତେ ବିଳମ୍ବରେ ଏବଂ ଯେତେ ସାମାନ୍ୟ ହେଉ ପଛେ, ସରକାରଙ୍କ ଠାରୁ "ପଦ୍ମଶ୍ରୀ" ପଦବୀ ପାଇଲେ । ଏଣେ ଓକିଲତିରେ ଏକାଧିକ ଜୁନିଅର ଓ ସହକର୍ମୀମାନଙ୍କ ପାଇଁ ଏକ ଆଦର୍ଶ ରଖିଗଲେ ଯେ ବଡ଼ ଓକିଲ ହୁଅ, ବଡ଼ଲୋକ ହୁଅ, କିଂତୁ ସତ କହିବାକୁ, ସାନ ହେବାକୁ ଏବଂ ଆବଶ୍ୟକ ହେଲେ ଗରିବ ହେବାକୁ ଡର ନାହିଁ ।

ସେହିପରି ଶ୍ରୀଯୁକ୍ତ ଭୁବନାନନ୍ଦ କେବଳ ଇଂଜିନିଅର୍ ହୋଇ ରହିଲେ ନାହିଁ, ବିଖ୍ୟାତ ଇଂଜିନିଅର୍ ହେଲେ । ଗ୍ଲାସ୍‌ଗୋ ବିଶ୍ୱବିଦ୍ୟାଳୟରୁ ଇଲେକ୍ଟ୍ରିକାଲ୍ ଇଂଜିନିଅରିଙ୍ଗ୍‌ରେ ଉଚ୍ଚ ଡିଗ୍ରୀ ହାସଲ କଲେ, ଯାହା ଓଡ଼ିଶାରେ ପୂର୍ବରୁ କେହି କରି ନ ଥିଲେ । ପକ୍‌କା "ସାହେବ" ହୋଇ ବମ୍ବେରେ ମୋଟା ଦରମାରେ ଚାକିରି ଆରମ୍ଭ କଲେ । କିନ୍ତୁ ଭାରତୀୟ ଆତ୍ମସମ୍ମାନରେ ବାଧା ପହୁଂଚିଲାରୁ କହିଲେ ଥାଉ, ଏ ଚାକିରି ମୋର ଲୋଡ଼ା ନାହିଁ । ଗାନ୍ଧୀଜୀଙ୍କ ଡାକ ଶୁଣି କଂଗ୍ରେସରେ ମିଶି ସାହେବୀ ପୋଷାକ ଛାଡ଼ି ଖଦଡ଼ ପିନ୍ଧିଲେ । ଯଥାକ୍ରମେ ଇଂଜିନିଅରିଙ୍ଗ୍ ଓ ରାଜନୀତି ଉଭୟ କ୍ଷେତ୍ରରେ ଯେଉଁସବୁ କୃତିର ଅଧିକାରୀ ହେଲେ ତା'ର ସାରାଂଶ ହେଲା; (୧) ଭାରତର ବିଭିନ୍ନ ରାଜ୍ୟ ଓ ସହର, ଯଥା-ରାଜକୋଟ, ବମ୍ବେ, ଭୋପ୍ , କାନ୍‌ପୁର ଇତ୍ୟାଦି ସ୍ଥାନରେ

ବିଦ୍ୟୁତ୍ ଶିଳ୍ପର ପ୍ରତିଷ୍ଠା କରି ଦେଶକୁ ଏ ଦିଗରେ ସ୍ୱାବଲମ୍ବନର ବାଟ ଦେଖାଇଲେ । ଯଥାକ୍ରମେ ପୁରୀ ଇଲେକ୍ଟ୍ରିକ୍ ସପ୍ଲାଇ କଂପାନୀ ବସାଇ ଓଡ଼ିଶାରେ ବିଦ୍ୟୁତ୍ ଶିଳ୍ପର ଭିତ୍ତି ସ୍ଥାପନ କଲେ । ଏବଂ ଓଡ଼ିଶାରେ ଇଂଜିନିଅରିଙ୍ଗ୍ ଶିକ୍ଷାର ପ୍ରସାର ନିମନ୍ତେ ପ୍ରଥମ ଇଂଜିନିଅରିଙ୍ଗ୍ ସ୍କୁଲ ବସାଇଲେ କଟକଠାରେ । (୨) ସ୍ୱାଧୀନତା ପୂର୍ବରୁ ଓ ସ୍ୱାଧୀନତା ପରେ ଦୀର୍ଘ ତିନି ଦଶକରୁ ବେଶୀ ବର୍ଷ ଯାଏଁ କେନ୍ଦ୍ର ଆସେମ୍ବ୍ଲି, ବିଧାୟକ ସଭା, ଲୋକସଭା ଓ ରାଜ୍ୟସଭାର ସଦସ୍ୟ ଭାବରେ ଜାତୀୟତାବାଦୀ ଓ ସଂସ୍କାରମୂଳକ ନାନାଦି ଆଇନ ପ୍ରଣୟନ ଓ ସଭାସମିତିରେ ଅଗ୍ରଣୀ ହୋଇ "ସଂସଦ ପିତା" (Father of the House) ବୋଲାଇଲେ । ବିଶେଷତଃ ସଂସଦର ଏକ ପ୍ରଧାନ ସମିତି ପବ୍ଲିକ୍ ଆକାଉଣ୍ଟ୍ସ କମିଟୀର ପ୍ରଥମ ଓ ସବୁଠାରୁ ବେଶୀ ବର୍ଷ ଯାଏଁ ଚେୟାରମ୍ୟାନ୍ ପଦରେ ରହି ସଂସଦୀୟ ଗଣତନ୍ତ୍ର (Parliamentary Democracy)ର ଭିତ୍ତିସ୍ଥାପନାରେ ମୁଖ୍ୟ ଭୂମିକା ଗ୍ରହଣ କଲେ । (୩) ଏଣେ ଓଡ଼ିଶାରେ ସ୍ୱାମୀଜୀଙ୍କ ସାଙ୍ଗରେ ମିଶି କିନ୍ତୁ ଆପଣା ବିଦ୍ୟାବୁଦ୍ଧି ଓ ପ୍ରଭାବ ବଳରେ ସର୍ବଭାରତୀୟ ସ୍ତରରେ, ତହୁଁ ବିଲାତର ଗୋଲ୍‌ଟେବୁଲ୍ ବୈଠକରେ ଓଡ଼ିଶାର ଏକ ବିଶିଷ୍ଟ ପ୍ରତିନିଧି ହୋଇ ଓଡ଼ିଆ ଭାଷାଭାଷୀ ଅନେକ ବିଚ୍ଛିନ୍ନ ଅଞ୍ଚଳ ତଥା ଆଦିବାସୀମାନଙ୍କୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଢ଼ାଇ ପାରିଲେ । ଏହାଛଡ଼ା ଶିଳ୍ପ, ସାମ୍ବାଦିକତା ଇତ୍ୟାଦି ଦିଗରେ ତାଙ୍କର ଅନେକ ଅବଦାନ ରହିଛି, ଯାହାର ବିଶଦ ବିବରଣୀ ପରବର୍ତ୍ତୀ ଲେଖାଗୁଡ଼ିକରେ ମିଳିବ, ତେଣୁ ଏଠାରେ କହିବା ନିଷ୍ପ୍ରୟୋଜନ ।

ବର୍ତ୍ତମାନ ମୋର ମୌଳିକ ନିବେଦନକୁ ଫେରିଆସେ ଯେ ସର୍ବୋପରି ଏମାନଙ୍କର ବ୍ୟକ୍ତିତ୍ୱହିଁ ମନୋମୁଗ୍ଧକର । ଯେଉଁଥିପାଇଁ ଏମାନଙ୍କ ବିଷୟରେ ଅଳ୍ପବହୁତ ଜାଣିଲେ ଆପଣ ଖୁସିହେବେ ବୋଲି ଆମର ବିଶ୍ୱାସ ।

ପ୍ରଥମେ ହେଲା ଏମାନଙ୍କର ଆନନ୍ଦ । ଦୁହିଁଙ୍କ ନାଆଁ ପଛରେ ଥିବା "ଆନଂଦ" ଅକାରଣ ନୁହେଁ । ଦେଶ ଓ ଜାତିପାଇଁ ନାନାଦି କାମର ଦାୟିତ୍ୱ ବହନ କରିଥିବା ହେତୁ ଭୂରୁ କୁଂଚେଇ, ମୁହଁ ଓହଳେଇ, ଗୁରୁଗଂଭୀର ଉଚ୍ଚାରଣ କରିବା ନେତୃତ୍ୱର ଅନ୍ୟତମ ଲକ୍ଷଣ ବୋଲି ଅନେକେ ଭାବିଥାଆନ୍ତି । ଭାବିବା ସ୍ୱାଭାବିକ, କାରଣ ସେଭଳି ଚରିତ୍ର ଆମର ତଥାକଥିତ ଇଣ୍ଟେଲେକ୍‌ଚୁଆଲ୍

ସମାଜ ସଂସାରରେ ବିରଳ ନୁହେଁ । ମହାତ୍ମା ଗାଂଧୀଙ୍କର ମନଖୋଲା ହସ ଆଉ କେତେଜଣ ନେତାମାନଙ୍କଠାରେ ଦେଖିବାକୁ ମିଳେ ? ସୁଖର ବିଷୟ ଏଇ ଦୁଇଭାଇ ଆନଂଦ କରିବାର ଲୋଭ ଛାଡ଼ିପାରି ନ ଥିଲେ । ଭୁବନାନଂଦଙ୍କ ବିଷୟରେ ଲେଖିବାକୁ ଯାଇ ତାଙ୍କର ଜଣେ ନାତୁଣୀ କହିଛି ଏଇ ସ୍ମରଣିକାରେ ଯେ ମନେ ପଡୁଛି ମୋର ସୁନ୍ଦର ସୁପୁରୁଷ "ସାନଅଜା" କେମିତି ହସନ୍ତି– ହାଃ ହାଃ ହାଃ । ଭୁବନାନନ୍ଦ କେବଳ ହସୁ ନ ଥିଲେ ଏମିତି, ରସିକତା କରିବାରେ ତାଙ୍କଠାରୁ କେହି ବଳେଇ ଯିବନାହିଁ । ଭାରତୀୟ ସାମ୍ବାଦିକତାର ପୁରୋଧା ସାର୍ ଉଷାନାଥ ସେନ୍ ତାଙ୍କର ଜଣେ ବିଶିଷ୍ଟ ବଂଧୁ ଥିଲେ । ଦିଲ୍ଲୀରେ ପହଂଚିଲା କ୍ଷଣି ସେ ଫୋନ୍‌ରେ ଡାକୁଥିଲେ ତାଙ୍କୁ– ଡାର୍ଲିଙ୍ଗ୍, କଅଣ ଖବର ? ଏଇ "ଡାର୍ଲିଙ୍ଗ୍" ସଂବୋଧନ ପଛରେ କେଉଁ ରହସ୍ୟମୟ ଘଟଣାର ସ୍ମୃତି ଥିଲା ଭଗବାନ ଜାଣନ୍ତି । ସେ କାଳର ସାମାଜିକ ପରିବେଶରେ, ଯେବେ ସ୍ୱାମୀ ଦିନବେଳେ ଆପଣା ସ୍ତ୍ରୀଙ୍କ ନାଆଁ ଧରି ଡାକିବାରେ କୁଣ୍ଠା ବୋଧ କରୁଥିଲା, ଭୁବନାନଂଦ ବୁଢ଼ା ବୋଲାଇଲା ପରେ ମଧ୍ୟ ତାଙ୍କ ସ୍ତ୍ରୀ ରୁକ୍ମିଣୀ ଦେବୀଙ୍କୁ "ରୁକ" ବୋଲି ଗେହ୍ଲାରେ ଡାକିବାକୁ ଦ୍ୱିଧା ବୋଧ କରୁ ନ ଥିଲେ । ରସିକତାର ଆଉ ଗୋଟିଏ ଉଦାହରଣ ଦେଉଛି, ଯାହା ତାଙ୍କର ବଡ଼ଝିଅ ଲେଖିଛନ୍ତି ସ୍ମରଣିକାରେ । ତାଙ୍କର ବଡ଼ ସମୁଦୁଣୀଙ୍କ ନାଆଁ ସତ୍ୟଭମା ଦେବୀ । ଏଇଥିରୁ ତାଙ୍କୁ ସୁବିଧା ମିଳିଗଲା, ଗୋଟାଏ କେଉଁ କାମର ବାହାନାରେ ଚିଟାଉ ଲେଖିଲେ ସମୁଦୁଣୀଙ୍କ ପାଖକୁ– "ସତ୍ୟଭମା ଦେବୀଙ୍କୁ ରୁକ୍ମିଣୀ ପତିଙ୍କର ଜୁହାର ।" ଏପରି ମଧୁର ଶ୍ଳେଷ ବାଢ଼ିବାର କଳମତି କେତେଜଣଙ୍କର ଅଛି ? ପରିଣତ ବୟସରେ ସେ ଯେତେବେଳେ ପାର୍ଲ୍ୟାମେଣ୍ଟର ବରିଷ୍ଠ ସଦସ୍ୟ ଭାବରେ ନେହରୁଙ୍କଠାରୁ ଆରମ୍ଭ କରି ସଦ୍ୟ ନିର୍ବାଚିତ ଏମ୍.ପି.ମାନଙ୍କର "ଅଙ୍କଲ" ବୋଲାଉଥିଲେ, ସେତେବେଳେ ମଧ୍ୟ ମୁଁ ଦେଖିଛି ସେ କେମିତି ଘରେ ବାହାରେ କନିଷ୍ଠମାନଙ୍କର ଥଟ୍ଟା ପରିହାସରେ ନିଜକୁ ମିଶେଇ ଦେଇ ପାରୁଥିଲେ, ସତେକି ସେ ଜୀବନ-ଭେଳିରୁ ଆଦୌ ଦୂରେଇ ଯାଇ ନାହାଁନ୍ତି କି ଦୂରେଇ ଯିବାର ମତଲବରେ ନାହାଁନ୍ତି । କିନ୍ତୁ କୁତ୍ସିତତା ଅଶ୍ଳୀଳତାର ଗଂଧ ପାଇଲେ ସେ ଓହରି ଯାଉଥିଲେ । ମୁହଁରେ କିଛି କହି ନ ପାରିଲେ ଗୁମ୍ ହୋଇ ବସୁଥିଲେ । ତାଂକ ଆନଂଦ-ପ୍ରବଣତାର ଅନ୍ୟ ଏକ ଦିଗ ହେଲା ସାନମାନଙ୍କୁ

(ପାଂଚରୁ ପନ୍ଦର ଏହି ପର୍ଯ୍ୟାୟରେ ପଡ଼ିବେ) ଖୁସି କରେଇବା, ଖୋଇବା, ପେଇବା, ମଜ୍ଜା କରିବାରେ ପ୍ରଶ୍ରୟ ଦେବା । ମୁହଁଶୁଖା ଉପଦେଷ୍ଟାମାନଙ୍କୁ ସେ ସୁଖ-ହନ୍ତା (Kill-joy) ବୋଲି କହୁଥିଲେ ଏବଂ ଆଦୌ ପସନ୍ଦ କରି ପାରୁ ନ ଥିଲେ । ତାଂକ "ବଡ଼" ଭାଇ ସ୍ୱାମୀଜୀଂକର ଆନଂଦରେ ଏଭଳି ହାସ୍ୟପ୍ରବଣତା ଓ ରସିକତା ଥିଲା ବୋଲି ମନେ ହୁଏନାହିଁ । ତା'ର ପ୍ରଧାନ କାରଣ ହେଉଛି ଯେ ଅଳ୍ପ ବୟସରେ ସ୍ତ୍ରୀଙ୍କୁ ହରାଇ ସେ ଜୀବନର ଅପରିହାର୍ଯ୍ୟ ବିଷାଦକୁ ବରଣ କରି ନେଇଥିଲେ । କିନ୍ତୁ ଧୂସର ଜ୍ୟୋସ୍ନା ପରି ବିଷାଦ ତାଙ୍କ ଭାବଭଂଗୀରେ ଏକ ମଧୁର ପ୍ରସନ୍ନତା ଆଣି ଦେଇଥିଲା । ସେ ସୂଚାଇ ଦେଉଥିଲେ ଅନ୍ୟମାନଙ୍କୁ ଯେ ବିଷାଦରେ ଦୁଃଖ ନାହିଁ କ୍ଳେଶ ନାହିଁ; ବିଷାଦର ଅନ୍ୟ ନାମ ଆନଂଦ, ବ୍ୟାପକ ଓ ନୈସର୍ଗିକ । ସେଇଥିପାଇଁ ଯେଉଁମାନେ ତାଙ୍କ ଦାନଧର୍ମର ପରକାଷ୍ଠା ଦେଖିଛନ୍ତି ବା ତାଙ୍କ "ଅତିଥିଶାଳା"ର ଅତିଥି ହୋଇ-ଛନ୍ତି, ସେମାନେ ମନେ ରଖିଛନ୍ତି ତାଙ୍କର ଉଚ୍ଛଳ ଆନ୍ତରିକ ଆନଂଦର ଜ୍ୟୋତି-ର୍ମୟ ରୂପ । କି ବିଚିତ୍ର ସେ ଆନଂଦ ଯାହା ଅନ୍ୟର ଦର୍ପଣରେ ଏଭଳି ଫୁଟି ଉଠି ପାରେ !

ଏ ଦୁଇଜଣଙ୍କର ଅନ୍ୟତମ ଗୁଣ ଯାହା ମୋତେ ଆକୃଷ୍ଟ କରିଛି, ତା' ହେଉଛି ଯେ ଦୁହିଁଙ୍କୁ ଦୁହେଁ ବ୍ୟାବହାରିକ ଦୃଷ୍ଟିରୁ, ବିଶେଷତଃ ବର୍ତ୍ତମାନର ଅର୍ଥ ପ୍ରଣୋଦିତ ସଭ୍ୟତାର ମାନଦଣ୍ଡରେ "ଇଉସ୍‌ଲେସ୍", କିଛି କାମର ନୁହଁନ୍ତି । ହସନ୍ତୁ ନାହିଁ, ସେ କଣ କାମ କରିଥିଲେ ନ କରିଥିଲେ ସେ ବିଷୟରେ ତ ଅନେକ କଥା କୁହା ହୋଇଛି । କିଂତୁ ଧରନ୍ତୁ ସେ ଉକ୍ତ କାମରେ ଏତେ ଯଶସ୍ୱୀ ହୋଇ ନ ଥାଆନ୍ତେ । ତା'ହେଲେ ଏ ଗୁଡ଼ା କି ବେକାରିଆ କାମ ବୋଲି ସାହିର ମାଉସୀ ପିଉସୀ କହି ନ ଥାଆନ୍ତେ କି ? ଖାଲି ମାଉସୀ ପିଉସୀ କାହିଁକି, ଅନେକ ବିଜ୍ଞ ବିଦ୍ୱାନ୍ ବ୍ୟକ୍ତି ମଧ୍ୟ ଦୁଃଖ କରି ଥାଆନ୍ତେ ଯେ ଏତେ ବୁଦ୍ଧିଆ ପିଲା ଦି'ଟା କିଛି କାମର ହେଲେ ନାହିଁ । ଅନ୍ୟ ଅର୍ଥରେ ସେମାନେ ନିଜ ପାଇଁ କିଛି କରି ପାରିଲେ ନାହିଁ । କିନ୍ତୁ କିଏ କଣ କହିବ ପରୁଆ ନ କରି ସାଧାରଣ ଘରର ପିଲା ଦି'ଜଣ, ଯେଉଁମାନଙ୍କର ସ୍ୱାଭବିକ ଉଦ୍ଦେଶ୍ୟ ହୁଅନ୍ତା କେମିତି "ଉପରକୁ ଉଠିବା", ଏଭଳି ଅଣକାମ କେମିତି କଲେ, କାହିଁକି କଲେ ଭାବିଲେ ବିସ୍ମିତ ହେବାକୁ ହୁଏ । ସ୍ୱାମୀଜୀଙ୍କ କଥା ଛାଡନ୍ତୁ, ସେ ତ ସହଜେ ଅଘୋରି, ତାଙ୍କ କଥା ପରେ କହିବି । ପକ୍ଷିଲେ

ଦେଖନ୍ତୁ ଏଇ ଉଚ୍ଚଶିକ୍ଷିତ ବିଲାତ ଫେରନ୍ତା ''ସାହେବ'' ଭୁବନାନଂଦ (ଲୋକ-ମୁଖରେ ବି. ଦାସ) ଙ୍କ କଥା । ସେ ଯୁଗକୁ ମଥାନକୁ ଛୁଇଁଲା ପରି ଶିକ୍ଷା ଦୀକ୍ଷା ପାଇ ସେ କେଉଁ ବୁଦ୍ଧିରେ ସାମାନ୍ୟ ଅପମାନ ସହି ନ ପାରି ଏଡ଼େ ବଡ଼ ଚାକିରିଟାକୁ ଛିଃ କରି ଦେଲେ ? ରାତାରାତି ପୋଷାକ ବଦଳେଇ ଖଦୀ ପିନ୍ଧିଲେ ? ଏଣେ ପ୍ରାୟ ଚାଳିଶ ବର୍ଷ ବୟସରେ "କୁଣା", ଓ ବଡ଼ଭାଇ ରାଘବାନନ୍ଦଙ୍କ କଥାରେ ପଡ଼ି ସଂସାର କରି ଗୁଡ଼ିଏ ପିଲାଙ୍କର ବାପା ହୋଇ ମଧ୍ୟ କୋଉ ଘର କଥା ଦେଖୁଲେ ନା ବୁଝିଲେ ? ତାଙ୍କର ଅର୍ଥନୈତିକ ଚିନ୍ତା-ଧାରା ବଳିଷ୍ଠ ଥିଲା ନିଶ୍ଚୟ । ନ ହେଲେ ସେ ଶିଳ୍ପର ଏତେ ଉନ୍ନତି କରାଇ ପାରି ନ ଥାଆନ୍ତେ । କିନ୍ତୁ ତାହା ବୃହତ୍ତର ସ୍ତର, macro levelରେ ଗତି କରୁଥିଲା । ଚାରି ଝିଅଙ୍କ ବାହାଘର ପାଇଁ ଟଙ୍କା ଆସିବ କେଉଁଠୁ, ଭବୀ ଜ୍ୱାଇଁ-ମାନଙ୍କୁ କେମିତି କେଉଁଠି ଖୋଜିବାକୁ ହେବ, ମୋଟଉପରେ ଘର ଚାଲୁଛି କେମିତି ଚଳିବ କେମିତି, ଏସବୁ ବିଷୟରେ ତାଙ୍କର ମୁଣ୍ଡବଥା ନ ଥିଲା । ନବା କହୁଥିଲେ କୁଣା ବୁଝିବ, କୁଣା କହୁଥିଲେ ନବା ବୁଝିବ, ଏବଂ ଦୁହେଁ ଜାଣୁ-ଥିଲେ ଯେ ଭଗବାନ୍ ବୁଝିବେ । ଆମ କାମ ହେଲା ଦେଖିବା କୋରାପୁଟ, ପାରଳାଖେମୁଣ୍ଡି ଓ ଆଦିବାସୀ ଅଞ୍ଚଳ କେମିତି ଓଡ଼ିଶାକୁ ଆସିବ, ସାହେବୀ ଇଂପିରିଆଲ୍ ବ୍ୟାଂକ୍‌କୁ କେମିତି ଦେଶୀ କରେଇ ହେବ, ଅନାଥାଶ୍ରମର 'ଘୁଙ୍ଗୀ'' କେମିତି କୂଳରେ ଲାଗିବ, ଇତ୍ୟାଦି ଇତ୍ୟାଦି । ଘରେ ଲକ୍ଷ୍ମୀପ୍ରତିମା ରୁକ୍ମିଣୀ ଦେବୀ ଅଛନ୍ତି, ସେ ସବୁ ଚଳେଇ ନେବେ, ତେଣିକି ଭଗବାନ୍ । ଉଲ୍ଲେଖଯୋଗ୍ୟ ଯେ ଯେତେବେଳେ ଭୁବନାନନ୍ଦ ଶେଷ ଥର ପାଇଁ ଜାଣିଲେ ଯେ ଦଳପକ୍ଷରୁ ତାଙ୍କୁ ପାର୍ଲିଆମେଣ୍ଟକୁ ବଛା ହେଲା ନାହିଁ, ତାଙ୍କ ପାଟିରୁ ବାହାରିଲା, "ମୋତେ ସେମାନେ କାଟ୍‌ଦେଲେ !", ଏବଂ ତାର କିଛି ସମୟ ପରେ ସେ ରକ୍ତଚାପ ଜନିତ 'ଷ୍ଟ୍ରୋକ୍' ରେ ଅଚେତ ହୋଇ ପଡ଼ିଲେ । ତା' ଉତ୍ତାରୁ ସେ ଚେତା ପାଇ ନାହାନ୍ତି । ସତେକି ସେ ଜାଣିଲେ ଯେ ତାଙ୍କୁ କାମରୁ ବଞ୍ଚିତ କରାଗଲା, ଆଉ ବଞ୍ଚି ଲାଭ ନାହିଁ । ସ୍ୱାମୀଜୀଙ୍କ କଥା ଆଉ କଣ କହିବା । ସେ ତ ସହଜେ ଗେରୁଆପିନ୍ଧା ସନ୍ନ୍ୟାସୀ । ସ୍ତ୍ରୀ ଓ ତା'ପରେ ପୁଅଟିଏ ହରାଇ, ସେଇଠୁଁ ଏକମାତ୍ର ସନ୍ତାନ ଓ ଝିଅକୁ ବିଭା ଦେଲା ପରେ ସେ ନବାଙ୍କ ସଂସାରରେ ବାନ୍ଧି ହୋଇ ଯାଇଥିଲେ । କିନ୍ତୁ ତାହା ସ୍ନେହ ମମତାର ବନ୍ଧନ, ଓଡ଼ିଶାର ଅଗଣିତ ଦୁଃସ୍ଥ ପୀଡ଼ିତମାନଙ୍କ ସହିତ ବନ୍ଧା ହୋଇଥିବା ଜାଲର

ଅଂଶ (ହୁଏତ ବିଶିଷ୍ଟ ଅଂଶ) ମାତ୍ର । ନବା ତାଙ୍କ ପାଇଁ ଭବିଚିନ୍ତି ଦିଲ୍ଲୀରୁ ଶାଲଟିଏ ଆଣିଲେ ଦେଖାଯାଏ ଯେ କିଛି ଦିନ ପରେ ସେଇଟି କେଉଁ ଅପର ଲୋକର ଗାତ୍ର ମଣ୍ଡନ କଲାଣି । କୃତ୍ରିମ ରୋଷରେ ନବା କୁହନ୍ତି କୁଶାଟା ଇଉସ୍‌ଲେସ୍ । ଭୁଲି ଯାଆନ୍ତି ଯେ ତାଙ୍କ ପ୍ରତି ମଧ୍ୟ ସେଇ ଶବ୍ଦଟି ପ୍ରଯୁଜ୍ୟ ହେବାର ଯଥେଷ୍ଟ କାରଣ ରହିଛି । ତେବେ ମାନିବାକୁ ହେବ ଯେ କୁଶାଙ୍କର ଅବସ୍ଥା ସୁଧାରିବାର ବାହାରକୁ ଚାଲି ଯାଇଥିଲା, ଯାହାକୁ କହନ୍ତି "ହୋପ୍‌ଲେସ୍ କେସ୍" । ଦେଇଥିଲେ ପାଇବା କଥା, ଏତିକି ଯାହାଙ୍କ ମୁଣ୍ଡରେ ପଶିଲା ନାହିଁ, ତାଙ୍କୁ ନେଇ କଣ କରି ହୁଅନ୍ତା ? ତେଣୁ, ଜଷ୍ଟିସ୍ ହରିହର ମହାପାତ୍ରଙ୍କ ଭାଷାରେ– "ସେ ଦେଇ ଯାଇଛନ୍ତି ସ୍ନେହ, ସାହାଯ୍ୟ, ସମସ୍ତଙ୍କୁ, ପାଇଛନ୍ତି କ୍ୱଚିତ୍ ବା କିଞ୍ଚିତ୍ ।" ମନେପଡୁଛି ପ୍ରସିଦ୍ଧ ଫରାସୀ କବି ବୋଦେଲେଆର୍ **(Baudelaire)** ଥରେ କହିଥିଲେ ଯେ ଦରକାରୀ କାମ କରିବା କଥା ଶୁଣିଲେ ମୋର ଗାତ୍ରକମ୍ପ ହୁଏ । ଏ ଦୁଇଜଣଙ୍କ ସହିତ ସାକ୍ଷାତ ହୋଇଥିଲେ ସେ ବୋଧହୁଏ ନିଧି ପାଇଲା ପରି ହୋଇଥାନ୍ତେ !

ତୃତୀୟରେ ଦୁହିଁଙ୍କର ନିର୍ଭୀକତା । ସ୍ପଷ୍ଟବାଦିତା । ଭୁବନାନନ୍ଦ ବମ୍ବେରେ ବଡ଼ ଚାକିରିକୁ ପଦାଘାତ କରି ଚାଲି ଆସିବା ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସତ ବୋଲି ଯାହା ବୁଝିଥିବେ ସେଇଆ କରିବେ; ସେଥିରେ ଯେତେ ଯାହା କ୍ଷତି ହେଉନା କାହିଁକି । ତାଙ୍କର ସବୁ "ସତ" ଯେ ଯଥାର୍ଥରେ ସତ, ସେ କଥା ମୁଁ କହୁନାହିଁ । କିନ୍ତୁ ତାଙ୍କର ନୀତିବଦ୍ଧତା, ଅନ୍ୟ ଅର୍ଥରେ ସାଲିସ୍ ବିହୀନ ଜିଦ୍‌ଖୋରି କାହାରି ଅଜଣା ନୁହେଁ । ଗୋଟିଏ ଉଦାହରଣ ଦେଉଛି । କଂଗ୍ରେସୀ ନେତା ହିସାବରେ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିର ବିରୋଧୀ ଦଳରୁ ସ୍ୱାଧୀନୋତ୍ତର ଭାରତର ଲୋକସଭାରେ ଶାସକ ଦଳକୁ ଆସିଲା ପରେ ମଧ୍ୟ ସେ ଅଡ଼ି ବସିଲେ ଯେ ମୁଁ ସରକାରଙ୍କୁ ସମାଲୋଚନା କରିବା ପାଇଁ ପୂର୍ବରୁ ଯେଉଁ ଚଉକିରେ ବସୁଥିଲି ସେଇ ଚଉକିରେ ବସିବି । କି ଆଶ୍ଚର୍ଯ୍ୟ କଥା ! କିନ୍ତୁ ବି. ଦାସଙ୍କ ଇମେଜ୍—ଭାବମୂର୍ତ୍ତିର ଅବମାନନା କରିବା ପାଇଁ କାହାର ସାହସ ହେଲାନାହିଁ । ନେହେରୁଙ୍କ ସମେତ ଅନ୍ୟମାନେ ତାଙ୍କ ପ୍ରସ୍ତାବରେ ରାଜି ହୋଇଗଲେ, ଏବଂ ସେ ସେହି ଚଉକିରେ ଜମେଇ ଦେଲେ ନିଜକୁ, ଲୋକସଭା ଛାଡ଼ିବା ଯାଏଁ । ତାଙ୍କର ଏଇ "ବିରୋଧୀ" ଭାବମୂର୍ତ୍ତିର ଅଧିକ

ସମ୍ମାନ ଦେବା ଉଦ୍ଦେଶ୍ୟରେ ତାଙ୍କୁ ପାର୍ଲିଆମେଣ୍ଟ୍ର ବିଶିଷ୍ଟ ପ୍ରତିବାଦୀ ସମିତି ପବଲିକ୍ ଆକାଉଣ୍ଟ୍ସ୍ କମିଟିର ପ୍ରଥମ ଚେୟାର୍ମ୍ୟାନ୍ ପଦରେ ରଖାଗଲା । କେବଳ ସେତିକି ନୁହେଁ, ଲୋକସଭାରୁ ରାଜ୍ୟସଭାକୁ ଆସିବା ଯାଏଁ ଦୀର୍ଘ ଦଶବର୍ଷ ପର୍ଯ୍ୟନ୍ତ ସେ ଏଇ କମିଟିର ଚେୟାର୍ମ୍ୟାନ୍ ପଦରେ ରହିଲେ, ଯଦ୍ୟପି ବ୍ରିଟିଶ ପାର୍ଲିଆମେଣ୍ଟ୍ର ରୀତି ଅନୁଯାୟୀ (ଯାହା ତାଙ୍କ ପରେ ଗୃହୀତ ହୋଇ ଯାଇଛି) ବିରୋଧୀ ଦଳର ସଭ୍ୟ ହିଁ ଏହି କମିଟିର ମୁଖ୍ୟ ହେବା ବିଧେୟ । ଏହି କମିଟିରେ ସେ ଅନେକ ସରକାରୀ ନୀତି ନିୟମର ସମାଲୋଚନା କରିବାରେ ଅଗ୍ରଣୀ ହୋଇଥିଲେ । ସବୁଠାରୁ ବିପଜ୍ଜନକ ହେଲା ଯେତେବେଳେ ସେ କୁଖ୍ୟାତ ଜିପ୍ କିଣା ବ୍ୟାପାର (Jeep scandal) ନେଇ ନେହେରୁଙ୍କ ପ୍ରିୟପାତ୍ର କୃଷ୍ଣ ମେନନ୍ଙ୍କ ପରି ଜଣେ ପ୍ରଭାବଶାଳୀ ନେତାଙ୍କର ବିରୋଧ କରିବାକୁ ବାଧ୍ୟ ହୋଇଥିଲେ । ଗତ ମେ ୧୪ ତାରିଖର ସାଧାରଣ ସଭାରେ ତତ୍କାଳୀନ ପାର୍ଲିଆମେଣ୍ଟ୍ର ସଭ୍ୟ ସୁରେନ୍ଦ୍ର ମହାନ୍ତି ଯାହା କହିଲେ, ସେଥିରୁ ବୁଝାଯାଏ ଯେ ସମାଲୋଚନାକୁ କୋହଳ କରିବା ପାଇଁ ତାଙ୍କ ଉପରେ ଅନେକ ଚାପ ପଡ଼ିଥିଲା (ମୋ ଜାଣିବାରେ ତାଙ୍କୁ ଗଭର୍ଣ୍ଣର ପଦ ମଧ୍ୟ ଯାଚ୍ଚ ହୋଇଥିଲା), କିନ୍ତୁ ସେ ନିଜ ବିଚାରରେ ଅଟଳ ହୋଇ ରହିଲେ । ସନ୍ଦେହ କରାଯାଏ ଯେ ଏଇଥିପାଇଁ ତାଙ୍କୁ ପରେ କଂଗ୍ରେସ ଟିକେଟ ମିଳିଲା ନାହିଁ । ଏବଂ ତାହାହିଁ ତାଙ୍କର କାଳ ହେଲା । କିନ୍ତୁ ପ୍ରତିରୋଧର ଦଣ୍ଡ ଭୋଗିବାକୁ ପଡ଼ିବ ଏକଥା ସେ କଣ ଜାଣି ନ ଥିଲେ ନା ତାଙ୍କୁ ବୁଝାଇବାର ଆବଶ୍ୟକତା ଥିଲା ? ସ୍ୱାମୀଜୀଙ୍କର ନିର୍ଭୀକତା ତ ଓଡ଼ିଶାର ଆଇନ୍ଜୀବୀ ମହଲରେ ପୁରାଣ କଥା ବୋଲି ମନେହୁଏ । ମିଛ ମାମଲା କରିବେ ନାହିଁ ବୋଲି ସେ କେତେ କ୍ଷତିରେ ପଡ଼ିଛନ୍ତି, ତାର ସୀମା ନାହିଁ । କିନ୍ତୁ ସେ ଯାହା ବୁଝିଥିବେ ସେଇଆ । କୋର୍ଟ କଚେରିରେ ଯାହା, ସଭାସମିତିରେ ତଦ୍ରୂପ । କେବଳ ଖାଫ କଥା କହୁଥିଲେ ନୁହେଁ, ଆତ୍ମାକୁ ବାଧିଲେ ସେ ଆବେଗରେ ଆପ୍ଲୁତ ହୋଇ ଯାହା ଇଚ୍ଛା ତାହା କହି ଯାଉଥିଲେ ବୋଲି ଅପବାଦ ଅଛି । ତଦ୍ୱାରା ନିଜ ଦଳର ବା ଆଡ୍ଭୋକେଟ୍ ଜେନେରାଲ ଥିଲା ବେଳେ ସରକାରଙ୍କ ଭାବମୂର୍ତ୍ତିରେ ଆଞ୍ଚ ଲାଗିବ, ସେଥିପ୍ରତି ଭ୍ରୂକ୍ଷେପ ନ ଥିଲା । କେତେବେଳେ ଜିତୁଥିଲେ ବା କେତେବେଳେ ହାରୁଥିଲେ, କିନ୍ତୁ ହାର୍ଜିତ୍ ତାଙ୍କ ପାଇଁ

ଥିଲା ଦେହର ମଳି । ଘରକୁ ଫେରିଲେ ଆରାମଦାୟକ ଗେରୁଆ ଲୁଙ୍ଗି ଓ କୁର୍ତ୍ତା, ଅତିଥି ଅଭ୍ୟାଗତଙ୍କ ମେଳା, ସ୍ନେହ, ଧର୍ମ ଓ ଦୟାର କୋଳାହଳ । ଶାନ୍ତି ।

ଶେଷକୁ ମୁଁ ଗୋଟିଏ ଗୁଣର ଅବତାରଣା କରିବାକୁ ଯାଉଛି, ଯାହା ଉପରେ ସାଧାରଣତଃ ବିଶେଷ ଗୁରୁତ୍ୱ ଦିଆଯାଏ ନାହିଁ । ମନେହୁଏ ତାହା ବାହ୍ୟିକ, ଆନ୍ତରିକ ନୁହେଁ, ତେଣୁ ଗୌଣ । ଗୁଣଟି ହେଲା ସୌଜନ୍ୟ, ଶାଳୀନତା । ଆଗ୍ରର ବ୍ୟବହାରରେ ମର୍ଯ୍ୟାଦା । ଏଥିରେ ଦୟା ଦାକ୍ଷିଣ୍ୟ ଆଦି ଆନ୍ତରିକତା ଥିଲେ ଭଲ, କିନ୍ତୁ ନ ଥିଲେ ମଧ୍ୟ (ବିପରୀତ ଭାବ ନ ଥିଲା ଯାଏଁ ) ଏଥିର ଯଥେଷ୍ଟ ମୂଲ୍ୟ ଅଛି, କାରଣ ଏହି ମୂଲ୍ୟବୋଧ ଉପରେ ହିଁ ସମାଜ, ବିଶେଷତଃ ଗଣତନ୍ତ୍ର ପ୍ରତିଷ୍ଠିତ । ଭୁବନାନନ୍ଦ କଂଗ୍ରେସରେ ଥାଇ ମଧ୍ୟ ପଣ୍ଡିତ ହୃଦୟନାଥ କୁଞ୍ଜୁରୁ, ତେଜ ବାହାଦୁର ସାପ୍ରୁ, ଜୟକାର ଆଦି ତଥାକଥିତ ମାଦ୍ଧାଦଳିଆ (liberal) ମାନଙ୍କ ସହିତ ସଂପୃକ୍ତ ଥିଲେ । ବିଶେଷତଃ କୁଂଜୁରୁଙ୍କର ସେ ଘନିଷ୍ଠ ବନ୍ଧୁ ଥିଲେ । ସ୍ୱକୀୟ ଗୁଣ ବୋଧହୁଏ ଏହିମାନଙ୍କ ସାହଚର୍ଯ୍ୟରେ ଅଧିକ ଉଜ୍ଜ୍ୱଳ ହୋଇ ଉଠିଥିଲା । ସେ ବୁଝିଥିଲେ ଯେ ଗଣତନ୍ତ୍ର ପରିଣତ ସଭ୍ୟତାର ପୁରସ୍କାର, "ଆଖି ନାହିଁ କାନ ନାହିଁ, ବାଜିଗଲେ ଦୋଷ ନାହିଁ" ଭାବର ପିଲାଖେଳ ନୁହେଁ । ବୁଝିଥିଲେ ଯେ ସର୍ବୋପରି ସଭ୍ୟ ଓ ସଂସ୍କୃତ, ଅର୍ଥାତ୍ "ଜେଣ୍ଟଲମ୍ୟାନ୍" ନ ହୋଇପାରିଲେ ପଂଗତରେ ବସିବା ଅନୁଚିତ । ତେଣୁ ରାଜନୀତିରେ ମାର୍କାମରା ବିରୋଧୀ ବୋଲାଉଥିଲେ ମଧ୍ୟ ସେ ସବୁ ଦଳ ସବୁ ଶ୍ରେଣୀର (ଓଡ଼ିଶାରୁ ଆସିଥିବା ପ୍ରତିନିଧିମାନଙ୍କ ପ୍ରତି ହୁଏତ ତାଂକର ଟିକିଏ ଅଧିକ ଦୁର୍ବଳତା ଥିଲା) ସଦସ୍ୟ, ଗୁଣୀ ଜ୍ଞାନୀ ବ୍ୟବସାୟୀମାନଂକ ସହିତ ଅନାୟାସରେ ଓ ପରମ ଉଲ୍ଲାସରେ ମିଶୁଥିଲେ, ଆତିଥ୍ୟରେ ତଥା ତାଂକର ଉଚ୍ଛ୍ୱସିତ ହସଖୁସିରେ ନିଜର କରି ନେଉଥିଲେ । ବିଶେଷ କରି ମୋର ମନେ ପଡ଼େ ପବ୍ଲିକ୍ ଆକାଉଣ୍ଟସ କମିଟିର ଚେୟାରମ୍ୟାନ୍ ହିସାବରେ ତାଙ୍କର ବ୍ୟବହାର । ଭାରତର ଅଡିଟର ଜେନେରାଲଙ୍କ ସହାୟକ ଭାବରେ ଏବଂ ପରେ ଅର୍ଥ ମନ୍ତ୍ରଣାଳୟ ତରଫରୁ ମୋତେ ଏହି ସମିତିର ବୈଠକରେ ଯୋଗ ଦେବାକୁ ପଡୁଥିଲା । ମୁଁ ଲକ୍ଷ୍ୟ କରୁଥିଲି ଯେ ଯେତେବେଳେ କୌଣସି ସଦସ୍ୟ ବିଭାଗୀୟ କର୍ତ୍ତୃପକ୍ଷଙ୍କୁ ପ୍ରଶ୍ନ କରିବାର ସୁଯୋଗ ନେଇ ଆକ୍ଷେପ ମୂଳକ ଜେରା କରି ବସନ୍ତି, ସେତେବେଳେ ସେ ସଭାପତିର ଅଧିକାର ଖଟାଇ ମାନ୍ୟବର ସହକର୍ମୀଙ୍କୁ ଚୁପ୍

କରାଇ ଦିଅନ୍ତି । ଏବେ ସୁଦ୍ଧା ତାଙ୍କର ସେହି ଆଚରଣ ସେବକାର କର୍ମକର୍ତ୍ତା (ବର୍ତ୍ତମାନ ଅନେକ ଅବସର ନେଲେଣି)ମନେ ରଖିଛନ୍ତି ଓ କୁହନ୍ତି—"ତାଙ୍କ ପରେ ଅନେକ ଦକ୍ଷ ଚେୟାରମ୍ୟାନଙ୍କୁ ଦେଖିଲୁଣି ଆମେ, କିନ୍ତୁ ଏଭଳି ଜଣେ ଜେଣ୍ଟଲ୍‌-ମ୍ୟାନ୍‌ଙ୍କୁ ପାଇବା ବିରଳ ।" ସୌଜନ୍ୟ ସାଙ୍ଗକୁ ଶାଳୀନତା । ଖଦୀବସ୍ତ୍ର ପିନ୍ଧିଲେ ମଧ୍ୟ ଭେକସ୍ୱରୂପ ମଳିମୁଣ୍ଡିଆ ହେବାକୁ ସେ ଆଦୌ ପସନ୍ଦ କରୁ ନଥିଲେ । ଖାଇବାରେ, ପିଇବାରେ, ସମସ୍ତ ଗତିବିଧିରେ ସେ ଶାଳୀନତାର ପ୍ରତିମୂର୍ତ୍ତି ଥିଲେ, ଯାହାକୁ ଇଂରାଜୀରେ ଏଲିଗ୍ୟାଣ୍ଟ୍ (elegant) ବୋଲି କୁହନ୍ତି । ମୋର କେବଳ ଗୋଟିଏ ଦୁଃଖ ଯେ ଶେଷ ଜୀବନରେ ସେ ନିଜ କାଗଜପତ୍ର ସଜାଡ଼ିବାରେ ବିଶେଷ ଯତ୍ନ ନେଇ ପାରୁ ନଥିଲେ । ନହେଲେ ଆଜି ଆମେ ତାଙ୍କର କେତେ ବହୁମୂଲ୍ୟ ଚିଠିପତ୍ର ଓ ଲେଖାଲେଖିର ସମ୍ପଦ ହରାଇ ନ ଥାଆନ୍ତୁ ! ସ୍ୱାମୀଜୀଙ୍କର ସୌଜନ୍ୟ ତାଙ୍କ ମହାନୁଭବତାର ଅଂଶ ମାତ୍ର ବୋଲି ମଣିବାକୁ ହେବ । ଉଚ୍ଚନୀଚ ଶତ୍ରୁମିତ୍ର ଭାବ ତାଙ୍କୁ ତିଳେମାତ୍ର ଛୁଇଁ ନଥିଲା, ନବାଙ୍କଠାରୁ ବଳି । ବିରୋଧୀ ଓକିଲ ହେଉ, 'ବିଦ୍ରୋହୀ' ଯୁବନେତା ହେଉ, ରଜାଘର ମହକିଲ ହୁଅନ୍ତୁ ବା ଗରିବ ଚଷାଟିଏ ହେଉ, ସମସ୍ତଙ୍କ ପାଇଁ ତାଙ୍କର ସେଇ ସ୍ମିତମଧୁର ବ୍ୟବହାର ଓ ତାଙ୍କ ପ୍ରସିଦ୍ଧ "ଅତିଥିଶାଳାର" ରୁଟି ତରକାରି । ଅତ୍ୟଧିକ ସରଳ ଜୀବନ ଯାପନ କରିବା ହେତୁ ତାଙ୍କର ଆଚରଣ ବିଧିରେ ନବାଙ୍କ ପରି ଏତେଟା ସୌଖୀନତା ନଥିଲା, କିନ୍ତୁ ତାଙ୍କ ଚରିତ୍ରର ମହାନତା ଭିତରେ ଏହି ତ୍ରୁଟିର ପ୍ରାସଙ୍ଗିକତା ନଥିଲା କହିଲେ ଚଳେ ।

ଦୁହେଁ ଦେଖିବାକୁ ସୁଠାମ, ସୁପୁରୁଷ । ବ୍ୟକ୍ତିଗତ ଜୀବନରେ ଦୁହିଁଙ୍କ ଅନୁଭୂତି ଭିନ୍ନ : ଜଣେ ବିପତ୍ନୀକ ସନ୍ନ୍ୟାସୀ, ଅନ୍ୟଜଣକ ସଂସାରୀ ଓ ଭୋଗୀ । ବାହ୍ୟିକ ପୋଷାକ ପରିଧାନ ଖାଦ୍ୟପେୟର ରୁଚିରେ ଜଣେ ଅତି ସରଳ, ଅନ୍ୟ ଜଣକ ଅଭିଜାତ । କେତେକାଂଶରେ ସ୍ୱାମୀଜୀଙ୍କୁ ରକ୍ଷଣଶୀଳ ଏବଂ ଭୁବନାନନ୍ଦଙ୍କୁ ଆଧୁନିକ ବୋଲି କୁହା ଯାଇ ପାରେ । କିନ୍ତୁ ଦୁହେଁ ଦେଶ ଓ ଦଶ ପାଇଁ ମହନୀୟ କୃତି ଛାଡ଼ି ଯାଇଛନ୍ତି । ଏବଂ ଦୁହିଁଙ୍କର ମୌଳିକ ଗୁଣ ସମାନ । ବିଚିତ୍ର–ସୁନ୍ଦର । ସାମାନ୍ୟ ଲେଖକ ଓ ସାଧାରଣ ନାଗରିକ ଭାବରେ ମୁଁ ସୁପାରିଶ କରୁଛି ଯେ ଏମାନଙ୍କ ବିଷୟରେ ପଢ଼ିବା ହୁଅନ୍ତୁ । ଆପଣଙ୍କୁ ଭଲ ଲାଗିବ ।

କିଶୋରୀ ଚରଣ ଦାସ
୨୯ ମେ, ୧୯୮୫

# ସ୍ୱାମୀ ବିଚିତ୍ରାନନ୍ଦ ଦାସ
## (ସଂକ୍ଷିପ୍ତ ଜୀବନୀ)

ସ୍ୱର୍ଗୀୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ ୧୮୮୫ ମସିହା ମେ ୧୪ତାରିଖ ସାବିତ୍ରୀ ଅମାବାସ୍ୟା ଦିନ ଜନ୍ମ ଗ୍ରହଣ କରିଥିଲେ । ପୁରୀଜିଲ୍ଲା ବାଲିପାଟଣା ଥାନା ପ୍ରାଚୀନଦୀ କୂଳବର୍ତ୍ତୀ ଅମଣାକୁଦ ନିକଟରେ ଥିବା କୁରୁଞ୍ଜିପୁର ଗ୍ରାମ ତାଙ୍କର ଜନ୍ମସ୍ଥାନ । ତାଙ୍କର ପିତାଙ୍କ ନାମ କାନୁନ୍‌ଗୋ ଶ୍ରୀ ରାମଚନ୍ଦ୍ର ଦାସ । ସ୍ୱର୍ଗୀୟ ଶ୍ରୀଯୁକ୍ତ ଭୁବନାନନ୍ଦ ଦାସ ତାଙ୍କର ସାଆଁଳା ଭାଇ ।

ସେ ୧୯୦୫ ମସିହାରେ କଟକର ରେଭେନ୍‌ସା କଲିଜିଏଟ୍ ସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାସ୍ କରି କଲିକତାରେ ଉଚ୍ଚଶିକ୍ଷା ଲାଭ କରିଥିଲେ । ୧୯୦୮ ମସିହାରେ ବି.ଏ. ପାସ୍ କରି ୧୯୧୧ରେ ଓକିଲାତି ପାସ୍ କଲେ । ଓକିଲାତି କଲାବେଳେ ସେ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସହକାରୀ ଭାବରେ କାର୍ଯ୍ୟ କରୁଥିଲେ । ଏଥିପୂର୍ବରୁ ମଧ୍ୟ ସେ ମଧୁବାବୁଙ୍କ ସହିତ ସଂପୃକ୍ତ ଥିଲେ । ୧୯୦୨ ମସିହାରେ ଛାତ୍ରାବସ୍ଥାରେ ସେ ମଧୁବାବୁଙ୍କ ଦ୍ୱାରା ପ୍ରତିଷ୍ଠିତ 'ଉତ୍କଳ ଯୁବ ସମାଜ'ର ସଦସ୍ୟ ରୂପେ ସମାଜସେବା ତଥା ଜାତୀୟ କାର୍ଯ୍ୟରେ ଲିପ୍ତ ଥିଲେ । ତାଙ୍କର ବହୁମୁଖୀ କର୍ମମୟ ଜୀବନର ବିଭିନ୍ନ କୃତି ଏହି ପ୍ରକାର:—

**ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ:—** ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ସେ ମଧୁବାବୁ ତଥା ତାଙ୍କ ଭାଇ ଭୁବନାନନ୍ଦ ଦାସ ପ୍ରମୁଖ ନେତୃବର୍ଗଙ୍କ ସାହଚର୍ଯ୍ୟରେ ଏବଂ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଏକ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ । ସେ ଉତ୍କଳ ସମ୍ମିଳନୀର ସଭାପତି ମଧ୍ୟ ହୋଇଥିଲେ ଓ ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନ ଅଞ୍ଚଳଗୁଡ଼ିକୁ ଓଡ଼ିଶାର ଅନ୍ତର୍ଭୁକ୍ତ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ ।

**ସ୍ୱାଧୀନତା ସଂଗ୍ରାମ ଓ ରାଜନୈତିକ ଜୀବନ:—** ସେ ୧୯୨୦ ମସିହାରେ କଂଗ୍ରେସରେ ଯୋଗ ଦେଇଥିଲେ ଏବଂ ଯଥାକ୍ରମେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନରେ ଆପଣାକୁ ନିୟୋଜିତ କରିଥିଲେ । ତାଙ୍କର କଟକ ଡଗରପଡ଼ାରେ ଥିବା ବାସସ୍ଥାନ ସ୍ୱାଧୀନତା ସଂଗ୍ରାମୀମାନଙ୍କର

ଆଶ୍ରୟସ୍ଥଳ ଥିଲା । ଜେଲ୍‌ରୁ ଖଲାସ ହୋଇଥିବା ସ୍ୱାଧୀନତା ସଂଗ୍ରାମୀମାନେ ତାଙ୍କଠାରୁ ସବୁ ପ୍ରକାର ସାହାଯ୍ୟ ଓ ସହାନୁଭୂତି ପାଇଥିଲେ ଏବଂ ଅନେକ ସଂଗ୍ରାମୀ ତାଙ୍କର ଯଥା ସର୍ବସ୍ୱ ସ୍ୱାମୀଜୀଙ୍କ ନିକଟରେ ନିରାପଦ ଭାବରେ ଜମା ରଖିବାକୁ ଭରସା କରୁଥିଲେ ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲାପରେ ଓଡ଼ିଶା ବିଧାନସଭାର ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ ଏବଂ ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ବ୍ରିଟିଶ୍ ସରକାରଙ୍କ ଅନେକ ଜନସ୍ୱାର୍ଥ ବିରୋଧୀ ଆଇନ୍‌କୁ ସେ ଦୃଢ଼ ଭାବରେ ବିରୋଧ କରିଥିଲେ । କିନ୍ତୁ ଦେଶ ସ୍ୱାଧୀନ ହେଲାପରେ ତାଙ୍କର ବାଗ୍ମୀତା ଓ ଆଇନଗତ ଅଭିଜ୍ଞତା ବିଧାନ-ସଭାର ବାହାରେ ଏବଂ ଲୋକପ୍ରିୟ ସରକାରଙ୍କ ତରଫରୁ କେସ୍ ଲଢ଼ିବା ଉଦ୍ଦେଶ୍ୟରେ ନିଯୁକ୍ତ କରିବାପାଇଁ ସ୍ଥିର କରାଗଲା ଏବଂ ୧୯୪୮ ରେ ସେ ସ୍ୱାଧୀନୋତ୍ତର ଓଡ଼ିଶାର ପ୍ରଥମ ଆଡ୍‌ଭୋକେଟ୍ ଜେନେରାଲ ପଦରେ ଅଧିଷ୍ଠିତ ହେଲେ । କିନ୍ତୁ ପରେ ସେ ବିଧାନସଭାକୁ ପୁଣି ଫେରିଯାଇଥିଲେ ଏବଂ ମଝିରେ କଂଗ୍ରେସ ଶାସନରୁ ଓହରି ଆସିଲାପରେ ସେ କିଛିବର୍ଷ ପାଇଁ ବିଧାନ-ସଭାର ବିରୋଧୀ ଦଳର ନେତାରୂପେ ନିର୍ବାଚିତ ହୋଇଥିଲେ । କିନ୍ତୁ କ୍ରମଶଃ ସେ ରାଜନୀତିରୁ ଦୂରେଇ ଯାଇ ତାଙ୍କର ସମସ୍ତ ସମୟ ସମାଜ କଲ୍ୟାଣ ଓ ରଚନାତ୍ମକ କାମରେ ବିତାଇଥିଲେ ।

## ଆଇନ୍ ବ୍ୟବସାୟଃ—

ସ୍ୱାମୀଜୀଙ୍କ ଜୀବନରେ ଆଇନ୍ ବ୍ୟବସାୟ ନାମମାତ୍ର ବ୍ୟବସାୟ ହୋଇ ରହିଥିଲା । ଆଇନ ଅଦାଲତରେ ସେ ଗରିବ ଲୋକଙ୍କଠାରୁ ଫିସ୍ ନେଉ ନ ଥିଲେ ଏବଂ କୌଣସି ମିଛ ମାମଲାରେ ହାତ ଦେଉ ନ ଥିଲେ । ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରି ଆଳି-କନିକା ଓ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ଯୋଗଦେଇ ଯେଉଁମାନେ ଅଭିଯୁକ୍ତ ହୋଇଥିଲେ ଏବଂ ଜେଲ ଭୋଗୁଥିଲେ, ସେ ସେମାନଙ୍କ ପାଇଁ କେବଳ ବିନା ଫିସ୍‌ରେ ଲଢୁଥିଲେ ନୁହେଁ, ସେମାନଙ୍କୁ ଯଥାବିଧି ସାହାଯ୍ୟ ମଧ୍ୟ କରୁଥିଲେ । ସେ କେତେ ବର୍ଷ ଯାଏଁ ଓଡ଼ିଶା ହାଇକୋର୍ଟ ବାର୍ କାଉନ୍‌ସିଲ୍‌ର ସଭାପତି ପଦ ମଧ୍ୟ ଅଳଂକୃତ କରିଥିଲେ ।

## ସମାଜ ସେବା:—

ଜନ ସେବା ହିଁ ସ୍ୱାମୀଜୀଙ୍କ ଜୀବନର ପରମ ବ୍ରତ ଥିଲା । ମହାତ୍ମା-ଗାଂଧୀଙ୍କ ପ୍ରେରଣା ଛଡ଼ା ବିବାହର ଅଳ୍ପ କେତୋଟି ବର୍ଷ ପରେ ୧୯୧୮ ମସିହାରେ ପତ୍ନୀଙ୍କୁ ହରାଇ ସେ ନିଜକୁ ସମସ୍ତ ବିଳାସବ୍ୟସନରୁ ବଂଚିତ କରି ଜନସେବାରେ ନିୟୋଜିତ କରିବା ଶ୍ରେୟ ବୋଲି ମନେ କଲେ । ୧୯୧୮ରୁ ୧୯୨୨ ମଧ୍ୟରେ ଯେଉଁ ପ୍ରଳୟଙ୍କରୀ ଧାରାବାହିକ ବନ୍ୟା ଓଡ଼ିଶାର ଜନ-ସାଧାରଣଙ୍କ ପାଇଁ ଘୋର ଦୁର୍ଦ୍ଦଶାର କାରଣ ହୋଇଥିଲା, ସ୍ୱାମୀଜୀ ସେଥିରେ ବ୍ୟଥିତ ହୋଇ ବନ୍ୟା ପ୍ରପୀଡ଼ିତ ଲୋକଙ୍କ ସେବା ସାହାଯ୍ୟ ପାଇଁ ଆପ୍ରାଣ ପରିଶ୍ରମ କରିଥିଲେ ଏବଂ ଅନେକ ସମାଜ ବ୍ୟବସ୍ଥାର ସୂତ୍ରପାତ କରିଥିଲେ । ଏହି ସଂକ୍ରାନ୍ତରେ ସେ ବନ୍ୟାକ୍ଳିଷ୍ଟ ଗୃହ ବାସହୀନ ବହୁ ଅନାଥ ଶିଶୁ, ଯୁବତୀ ଓ ମହିଳାମାନଙ୍କ ଥଇଥାନ ପାଇଁ କଟକଠାରେ ଓଡ଼ିଶା ଅନାଥା-ଶ୍ରମ ପ୍ରତିଷ୍ଠା କରିଥିଲେ । ଏହା ଓଡ଼ିଶାର ପ୍ରଥମ ସମାଜ କଲ୍ୟାଣମୂଳକ ପ୍ରତିଷ୍ଠାନ ଏବଂ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସରକାରଙ୍କ ବିନା ସାହାଯ୍ୟରେ ତିଷ୍ଠି ରହିଥିଲା । ୧୯୨୩-୨୪ରେ ମହାତ୍ମାଗାଂଧୀ ସେହି ଆଶ୍ରମ ପରିଦର୍ଶନ କରି ତାଙ୍କ କାର୍ଯ୍ୟର ଭୂୟସୀ ପ୍ରଶଂସା କରିଥିଲେ । ତାଙ୍କର ସମାଜସେବାରେ ମୁଗ୍‌ଧ ହୋଇ ଠକ୍‌କର ବାପା ତାଙ୍କୁ 'ସ୍ୱାମୀଜୀ' ଉପାଧି ପ୍ରଦାନ କରିଥିଲେ । ଏହାଛଡ଼ା କୁଷ୍ଠ ନିବାରଣ ଆଦି ନାନା ସମାଜ କଲ୍ୟାଣ କାମରେ ତାଙ୍କର ପ୍ରଭୂତ ଅବଦାନ ଥିଲା । ଯଥାକ୍ରମେ ସ୍ୱାଧୀନ ଭରତ ସରକାର ମଧ୍ୟ ତାଙ୍କୁ ସମାଜ ସେବାର ସ୍ୱୀକୃତି ସ୍ୱରୂପ 'ପଦ୍ମଶ୍ରୀ' ସମ୍ମାନରେ ଭୂଷିତ କରିଥିଲେ ।

ଆନୁଷ୍ଠାନିକ ସମାଜକଲ୍ୟାଣ ଛଡ଼ା ଦୈନନ୍ଦିନ ଜୀବନରେ ସେ ଅନେକ ଦୁଃସ୍ଥ, ଛାତ୍ର, କର୍ମୀ ଓ ସାଧାରଣ ନାଗରିକଙ୍କୁ ସାହାଯ୍ୟ କରି ପରମ ଦାନୀ ରୂପେ ଖ୍ୟାତିଲାଭ କରିଥିଲେ । ଅତି ସରଳ ଜୀବନ ଯାପନ କରି ଓକିଲାତିରୁ ଯାହା କିଛି ବଳକା ରହୁଥିଲା ସେ ସାହାଯ୍ୟାର୍ଥୀମାନଙ୍କୁ ବାଣ୍ଟି ଦେଉଥିଲେ । ତାଙ୍କର ବାସଭବନ ଉନ୍ମୁକ୍ତ ଅବାରିତ ଅତିଥିଶାଳା ରୂପେ ଗଣା ହେଉଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ରାଷ୍ଟ୍ରଭାଷା ପ୍ରଚାର:—

ନାନାଦି ଗଠନମୂଳକ କାର୍ଯ୍ୟ ମଧ୍ୟରେ ଓଡ଼ିଶାରେ ରାଷ୍ଟ୍ରଭାଷା ପ୍ରଚାର

ତାଙ୍କର ବିଶେଷ ଆଗ୍ରହ ଥିଲା ଏବଂ ସେ ଓଡ଼ିଶାର ରାଷ୍ଟ୍ରଭାଷା ପ୍ରଚାର ସମିତିର ପ୍ରତିଷ୍ଠାତା ତଥା ଆଜୀବନ ସଭାପତି ଥିଲେ ।

ସେ ୯୦ ବର୍ଷ ବୟସରେ ୧୯୭୫ ମସିହା ଅକ୍ଟୋବର ୧୦ ତାରିଖରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କର ଇଚ୍ଛାନୁଯାୟୀ ତାଙ୍କ ପାଇଁ ସ୍ୱତନ୍ତ୍ର ସମାଧି ଗଢ଼ା ହୋଇ ନ ଥିଲା । କେବଳ ତାଙ୍କର ନାଆଁ ତାଙ୍କ ସ୍ତ୍ରୀଙ୍କ ସମାଧିରେ ଲିପିବଦ୍ଧ ନାଆଁରେ ଯୋଡ଼ି ଦିଆଯାଇଥିଲା । ତାଙ୍କର ଏକମାତ୍ର ସନ୍ତାନ ଲାବଣ୍ୟପ୍ରଭା ଦେବୀ ଓଡ଼ିଶାର ଭୂତପୂର୍ବ ସ୍ୱାସ୍ଥ୍ୟ ବିଭାଗର ଡାଇରେକ୍ଟର ସ୍ୱର୍ଗୀୟ ନାରାୟଣ ବନ୍ଧୁ ପଟ୍ଟନାୟକଙ୍କୁ ବିବାହ କରିଥିଲେ । ତା ଛଡ଼ା ସେ ତାଙ୍କର ଯାଆଁଳା ଭାଇ ଭୁବନାନନ୍ଦଙ୍କ ପୁଅ ଚିତ୍ତରଞ୍ଜନ ଦାସଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ।

—o—

# ଶ୍ରୀଯୁକ୍ତ ଭୁବନାନନ୍ଦ ଦାସ
## ( ସଂକ୍ଷିପ୍ତ ଜୀବନୀ )

ସ୍ୱର୍ଗୀୟ ଶ୍ରୀ ଭୁବନାନନ୍ଦ ଦାସ ୧୮୮୫ ମସିହା ମେ ୧୪ ତାରିଖ ସାବିତ୍ରୀ ଅମାବାସ୍ୟା ଦିନ ଜନ୍ମଗ୍ରହଣ କରିଥିଲେ । ପୁରୀ ଜିଲ୍ଲା ବାଲିପାଟଣା ଥାନା ଅନ୍ତର୍ଗତ କୁରୁଂଜିପୁର ଗ୍ରାମରେ ତାଙ୍କର ଜନ୍ମ । ତାଙ୍କର ପିତାଙ୍କର ନାମ କାନୁନ୍‌ଗୋ ଶ୍ରୀ ରାମଚନ୍ଦ୍ର ଦାସ । ସ୍ୱର୍ଗୀୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ ତାଙ୍କର ଯାଆଁଳା ଭାଇ । ତାଙ୍କ ଜନ୍ମର ଅଳ୍ପ କେତୋଟି ମୁହୂର୍ତ୍ତ ପୂର୍ବରୁ ବିଚିତ୍ରାନନ୍ଦଙ୍କର ଜନ୍ମ ହୋଇ ଥିବାରୁ ସେ ନିଜକୁ ସାନ ଓ ସ୍ୱାମୀଜୀଙ୍କୁ ବଡ଼ ବୋଲି ମାନୁଥିଲେ ଓ ଦୁହେଁ ପରସ୍ପରକୁ ଲବ ଓ କୁଶ ବୋଲି ଡକାଡକି ହେଉଥିଲେ ।

ସେ ୧୯୦୫ ମସିହାରେ କଟକର ରେଭେନ୍‌ସା କଲିଜିଏଟ ସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାସ୍ କରିଥିଲେ । ଏହି ପରୀକ୍ଷାରେ ସେ ଓଡ଼ିଆ ଛାତ୍ରମାନଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କରି ସରକାରୀ ବୃତ୍ତି ପାଇ-ଥିଲେ । ୧୯୦୭ ମସିହାରେ ରେଭେନ୍‌ସା କଲେଜରୁ ପ୍ରଥମ ଶ୍ରେଣୀରେ ଏଫ୍.ଏ. ପାସ୍ କରିଥିଲେ । ରେଭେନ୍‌ସା କଲେଜରେ ପଢୁଥିବା ବେଳେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କଳ ଯୁବ ସମାଜ (Young Men's Association) ଉଦ୍ୟମରେ ଅନୁଷ୍ଠିତ ଇଂରାଜୀ ପ୍ରବନ୍ଧ ପ୍ରତିଯୋଗିତାରେ ପ୍ରଥମ ହୋଇ ସ୍ୱର୍ଣ୍ଣ ପଦକ ଲାଭ କରିଥିଲେ ।

ଏଫ୍.ଏ. ପାସ୍ କରିବାପରେ ସେ ଶିବପୁର ଇଞ୍ଜିନିୟରିଂ କଲେଜରେ ନାମ ଲେଖାଇଲେ । ସେଠାରୁ ୧୯୧୧ ମସିହାରେ କୃତିତ୍ୱ ସହ ଇଂଜିନିୟରିଂରେ ଡିଗ୍ରୀ ହାସଲ କରି ବୃତ୍ତି ପାଇ ଉଚ୍ଚ ଶିକ୍ଷା ପାଇଁ ବିଲାତ ଯାତ୍ରା କଲେ । ବିଲାତରେ ଗ୍ଲାସଗୋ ୟୁନିଭରସିଟିରୁ ଇଲେକ୍ଟ୍ରିକାଲ ଇଂଜିନିୟରିଂରେ ଗ୍ରାଜୁଏଟ୍ ହୋଇ ଭାରତ ଫେରି ଆସିଲେ । ଓଡ଼ିଆମାନଙ୍କ ମଧ୍ୟରେ ଇଂଜିନିୟରିଂରେ ଏଭଳି ଉଚ୍ଚ ଶିକ୍ଷା ପୂର୍ବରୁ କେହି ପାଇ ନ ଥିଲେ । ଫେରିଆସି ସେ ବମ୍ବେଠାରେ B.E.S.T. (Bombay Electrical Supply and Trans-port) କମ୍ପାନୀରେ ଗୋଟିଏ ଭଲ ଚାକିରି ପାଇଲେ । ଚାକିରିରେ ପ୍ରାରମ୍ଭିକ

ବେତନ ଥିଲା ଟ. ୭୦୦/– ସେତେବେଳର ବେଶ୍ ମୋଟା ଦରମା କହିଲେ ଚଳେ । କିନ୍ତୁ କେତେଦିନ ପରେ ତାଙ୍କୁ ନାଯ୍ୟ ପ୍ରମୋସନ୍‌ରୁ ବଞ୍ଚିତ କରି, ଇଂରେଜ ହୋଇଥିବା ଯୋଗୁଁ ତାଙ୍କ ଅଧସ୍ତନ ଅଫିସରଙ୍କୁ ପ୍ରମୋସନ ଦେବାର ଅବିଗ୍ୱରରେ କ୍ଷୁବ୍ଧ ହୋଇ ସେ ଚାକିରି ଛାଡ଼ିଦେଲେ ଏବଂ ସ୍ୱାଧୀନ ବ୍ୟବସାୟ କରିବାପାଇଁ ସ୍ଥିର କଲେ । ତତ୍‌ସହ ଭାଇ ବିଚିତ୍ରାନଂଦ ଦାସଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ କଂଗ୍ରେସରେ ଯୋଗ ଦେଲେ । ୧୯୨୧ରେ ଅନୁଷ୍ଠିତ ହୋଇଥିବା ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନରେ ସେ ଓଡ଼ିଶାର ଏକମାତ୍ର ପ୍ରତିନିଧିରୂପେ ଯୋଗ ଦେଇଥିଲେ । ଏହାପରେ ତାଙ୍କର ଜୀବନଧାରା ସଂପୂର୍ଣ୍ଣ ଭିନ୍ନ ଭାବରେ ଗତି କଲା । ତାଙ୍କର ବହୁମୁଖୀ କର୍ମମୟ ଜୀବନର ଉଦ୍ୟମ ଓ କୃତିର ବିଭବ ଏହି ପ୍ରକାର :

## ଶିଳ୍ପ ପ୍ରସାର :—

ଜଣେ ଉଚ୍ଚଶିକ୍ଷା ପ୍ରାପ୍ତ ବିଶିଷ୍ଟ ଇଞ୍ଜିନିୟର ହେବା ହେତୁ ଭୁବନାନନ୍ଦ ବାବୁ ବିଦ୍ୟୁତ୍ ଶିଳ୍ପରେ ବିଶେଷ ସହଯୋଗ ଦେଇଥିଲେ । ସେତେବେଳେ ଭାରତବର୍ଷରେ ବିଦ୍ୟୁତ୍ ଶିଳ୍ପର ପରିସ୍ଥିତି ଅତ୍ୟନ୍ତ ଦୁର୍ବଳ ଥିଲା ଏବଂ ବଡ଼ ବଡ଼ ସହରର ବିଦ୍ୟୁତ୍ ଉତ୍ପାଦନ ଓ ସରବରାହ ସଂସ୍ଥାମାନ ଇଂରେଜ ବ୍ୟବସାୟୀଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ଭୁବନାନନ୍ଦ ବାବୁ ବିଦ୍ୟୁତ୍ ଶିଳ୍ପକୁ ଭାରତୀୟ ଉଦ୍ୟୋଗର କର୍ତ୍ତୃତ୍ୱରେ ଆଣିବାପାଇଁ ବଦ୍ଧପରିକର ହେଲେ ଏବଂ ଏହି ପର୍ଯ୍ୟାୟରେ ସେ ବ୍ରୋଚ୍, କାମ୍ବେ, ଶିଖରପୁର, ଆଲିଗଡ଼, ଗୟା, ଛାପ୍‌ରା, ରାଜମହେଂଦ୍ରୀ ଓ କାକିନାଡା ପ୍ରଭୃତି ଭାରତର ବିଭିନ୍ନ ସହରରେ ବିଦ୍ୟୁତ୍ ଉତ୍ପାଦନ ଓ ସରବରାହ ସଂସ୍ଥାମାନ ସ୍ଥାପିତ କରି ପାରିଥିଲେ । ଏହାଛଡ଼ା ସେ ରାଜକୋଟ୍ ଓ ଅନ୍ୟ କେତୋଟି ରାଜ୍ୟର ବିଦ୍ୟୁତ୍ ପରାମର୍ଶଦାତା ରୂପେ ନିଯୁକ୍ତ ହୋଇଥିଲେ । ଓଡ଼ିଶାରେ ଥିବା ମୟୂରଭଞ୍ଜ ରାଜ୍ୟର ରାଜା ସ୍ୱନାମଧନ୍ୟ ଶ୍ରୀ ରାମଚନ୍ଦ୍ର ଭଞ୍ଜ ମଧ୍ୟ ତାଙ୍କୁ ବାରିପଦାର ବିଦ୍ୟୁତ୍ ଯୋଗାଣ ପାଇଁ ପରାମର୍ଶଦାତା ଭାବରେ ଗ୍ରହଣ କରିଥିଲେ । ବିଦ୍ୟୁତ୍ ଶିଳ୍ପ ଦିଗରେ ତାଙ୍କର ସର୍ବଶ୍ରେଷ୍ଠ କୃତି ଏହି ଯେ, ସମସ୍ତ ବାଧାବିଘ୍ନ ସତ୍ତ୍ୱେ ସେ ୧୯୪୦ ମସିହାରେ ଓଡ଼ିଶାର ପ୍ରଥମ ଜାତୀୟ ବିଦ୍ୟୁତ୍ ସଂସ୍ଥା ପୁରୀ ଇଲେକ୍‌ଟ୍ରିକ୍ ସପ୍ଲାଇ କମ୍ପାନୀର ପ୍ରତିଷ୍ଠା କରିଥିଲେ ।

ଓଡ଼ିଶାର ଉପକୂଳ ଅଞ୍ଚଳରେ ଲବଣ ଶିଳ୍ପର ପୁନରୁଦ୍ଧାର ନିମନ୍ତେ ଭୁବନାନନ୍ଦ ବାବୁ ତତ୍‌କାଳୀନ ଭାରତ ସରକାରଙ୍କୁ ଏକ ସ୍ମାରକ ପତ୍ର

ଦେଇଥିଲେ । ପରବର୍ତ୍ତୀ କାଳରେ ତାଙ୍କର ଯୋଜନା କାର୍ଯ୍ୟକାରୀ ହେବା ଦ୍ୱାରା ଓଡ଼ିଶାରେ ଲବଣ ଶିଳ୍ପର ଅଗ୍ରଗତି ହୋଇଛି ।

ସେ ଫେଡ୍‌ରେସନ୍ ଅଫ୍ ଇଣ୍ଡିଆନ୍ ଚେମ୍ବରସ୍ ଅଫ୍ କମର୍ସ ଓ ଇଣ୍ଡଷ୍ଟ୍ରିଜ୍‌ର ( Federation of Indian Chambers of Commerce & Indus) ର ସଭ୍ୟ ଥାଇ ୧୯୬୯ ମସିହାରେ ଜେନେଭାରେ ଅନୁଷ୍ଠିତ ଆନ୍ତର୍ଜାତିକ ଶ୍ରମିକ ସମ୍ମିଳନୀରେ ଶ୍ରମିକ ପରାମର୍ଶଦାତା ରୂପେ ଯୋଗ ଦେଇଥିଲେ । ସେହିବର୍ଷ ତାଙ୍କର ଉଦ୍ୟମରେ ଓଡ଼ିଶା ଚେମ୍ବର ଅଫ୍ କମର୍ସ ପ୍ରତିଷ୍ଠିତ ହୋଇଥିଲା ।

ଭୁବନାନନ୍ଦ ବାବୁ ବହୁବର୍ଷ ଯାଏ ବିହାର ରାଜ୍ୟର ଶିଳ୍ପ ବୋର୍ଡ ଓ ବିହାର ଇଂଜିନିୟରିଂ କଲେଜର ପରିଚାଳନା ପରିଷଦର ସଭ୍ୟ ଥିଲେ । ତାଙ୍କରି ଉଦ୍ୟମରେ କଟକରେ ଇଂଜିନିୟରିଂ ସ୍କୁଲ ସ୍ଥାପିତ ହୋଇଥିଲା ଓ ଅନେକ ଦିନ ଯାଏ ସେ ତାହାର ସଭାପତି ଥିଲେ ।

## ରାଜନୀତି:—

ସର୍ବଭାରତୀୟ କ୍ଷେତ୍ରରେ ଭୁବନାନନ୍ଦ ବାବୁ ଶ୍ରୀ ବି. ଦାସ ନାମରେ ସୁପରିଚିତ । ପ୍ରଥମେ ନାସ୍‌ନାଲିଷ୍ଟ ପାର୍ଟି ଓ ପରେ କଂଗ୍ରେସ ପାର୍ଟିର ସଭ୍ୟ ହିସାବରେ ଭୁବନାନନ୍ଦ ବାବୁ ୧୯୧୫ ମସିହାରୁ ମୃତ୍ୟୁ ପର୍ଯ୍ୟନ୍ତ ଦୀର୍ଘ ୪୩ ବର୍ଷ ଯାଏ ଐତିହାସିକ କ୍ରମରେ ବିଭିନ୍ନ ନାମରେ ଅଭିହିତ, କେନ୍ଦ୍ର ବିଧାୟକ ପରିଷଦକୁ ମନୋନୀତ ତଥା ନିର୍ବାଚିତ ହୋଇ ଦେଶର ବିଧାନମୂଳକ ଗଣତନ୍ତ୍ର (Parliamentary Democracy) ର ଭିତ୍ତି ସ୍ଥାପନା ଓ ଅଗ୍ରଗତିରେ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲେ । ଏଥିପାଇଁ ଲୋକମୁଖରେ ତାଙ୍କୁ ସଂସଦର ପିତା (Father of the House) ବୋଲି କୁହାଯାଉଥିଲା । ସ୍ୱାଧୀନତା ପୂର୍ବରୁ ଲେଜିସ୍‌ଲେଟିଭ ଆସେମ୍ବ୍‌ଲି ଏବଂ ସ୍ୱାଧୀନତା ପରେ ଯଥାକ୍ରମେ କନ୍‌ଷ୍ଟିଚୁଏଣ୍ଟ ଆସେମ୍ବ୍‌ଲି, ଲୋକସଭା ଏବଂ ରାଜ୍ୟସଭାର ସଦସ୍ୟ ହୋଇ ସେ ସଂବିଧାନ ପ୍ରଣୟନ କ୍ଷେତ୍ରରେ ତଥା ବିଭିନ୍ନ କମିଟୀର ସଦସ୍ୟ ଓ ସଭାପତି ରୂପେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ଶ୍ରୀଯୁକ୍ତ ମୋତିଲାଲ ନେହରୁ, ଡକ୍ଟର ହୃଦୟନାଥ କୁଂଜୁରୁ, ଶ୍ରୀ କେ.ସି. ନିୟୋଗୀ, ପଣ୍ଡିତ ମଦନ ମୋହନ ମାଲବ୍ୟ, ଓଡ଼ିଶାର ଶ୍ରୀ ସାରଙ୍ଗଧର ଦାସ ପ୍ରମୁଖ ବିଭିନ୍ନ ନେତାଙ୍କ ସହିତ

ତାଙ୍କର ଘନିଷ୍ଠ ବନ୍ଧୁତା ଥିଲା । ପାର୍ଲିଆମେଣ୍ଟର ଏକ ବଳିଷ୍ଠ କମିଟୀ ପବ୍ଲିକ୍ ଆକାଉଣ୍ଟସ୍ କମିଟୀର ସେ ପ୍ରଥମ ଓ ସବୁଠାରୁ ବେଶୀ ବର୍ଷ ଯାଏ ଚେୟାରମ୍ୟାନ୍ ହୋଇ ରହି କମିଟୀର କାର୍ଯ୍ୟ ବିଧିକୁ ଏକ ବିଶେଷ ମର୍ଯ୍ୟାଦା ସଂପନ୍ନ ସ୍ତରକୁ ନେଇ ଆସି ପାରିଥିଲେ । ବ୍ରିଟିଶ ପାର୍ଲିଆମେଣ୍ଟର ସଂସ୍କାର ଅନୁଯାୟୀ ବିରୋଧୀ-ଦଳର ନେତା ବା ଆଉ କେହି ଏହି କମିଟୀର ଚେୟାରମ୍ୟାନ୍ ରୂପେ ମନୋନୀତ ହୁଅନ୍ତି । ଯେପରିକି ଆବଶ୍ୟକ ହେଲେ କମିଟୀ ସରକାରଙ୍କୁ ସମାଲୋଚନା କରି-ବାରେ ପଛଘୁଞ୍ଚା ଦେବ ନାହିଁ । କିନ୍ତୁ ଭୁବନାନନ୍ଦ ବାବୁ କଂଗ୍ରେସରେ ଥାଇ ମଧ୍ୟ ଏଭଳି ନିର୍ଭୀକ ଏବଂ ନିରପେକ୍ଷ ସଦସ୍ୟ ରୂପେ ଖ୍ୟାତିଲାଭ କରିଗଲେ ଯେ ପ୍ରାୟ ୧୫ ବର୍ଷ ଯାଏ ତାଙ୍କୁ ନିର୍ବିବାଦରେ ଏହି କମିଟୀର ସଭାପତି ରୂପେ ବଛାଯାଇଥିଲା । ଏହାଛଡ଼ା ସେ ବିଭିନ୍ନ ସମୟରେ ବିଧାୟକ କଂଗ୍ରେସ ଦଳର ମୁଖ୍ୟ କାରପଟ୍‌ଦାର (Chief Whip) ଓ କୋଷାଧ୍ୟକ୍ଷ ଥିଲେ । ନାନାଦି ଆଇନ୍ ପ୍ରଣୟନ ମଧ୍ୟରେ ବାଲ୍ୟ ବିବାହ ଉଚ୍ଛେଦ ଆଇନ୍ ସଂଶୋଧନ ଓ ଇଂପିରିଆଲ ବ୍ୟାଙ୍କର ଜାତୀୟକରଣ ତାଙ୍କର ବିଶେଷ ଅବଦାନ ରୂପେ ଗୃହୀତ ।

## ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ:—

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଭୁବନାନନ୍ଦ ବାବୁଙ୍କର ଅବଦାନ ଚିରସ୍ମରଣୀୟ । କେନ୍ଦ୍ରୀୟ ବିଧାନସଭାର ସଭ୍ୟ ଥିଲାବେଳେ ସେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଏକ ପ୍ରସ୍ତାବ ଆଣିଥିଲେ । କେନ୍ଦ୍ରୀୟ ବିଧାନସଭା ଏହି ପ୍ରସ୍ତାବକୁ ସମର୍ଥନ କରି ତତ୍‌କାଳୀନ ମାନ୍ଦ୍ରାଜ ରାଜ୍ୟ ଅନ୍ତର୍ଗତ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସମ୍ପର୍କରେ ଅନୁସନ୍ଧାନ ପାଇଁ ଫିଲିପ ଡଫ୍ କମିଟୀ ନାମରେ ଅଭିହିତ ଏକ କମିଟୀ ନିଯୁକ୍ତ କରିଥିଲେ । ସାଇମନ୍ କମିଶନ ମଧ୍ୟ ଏହି ଦାବି ଗ୍ରହଣ କରିଥିଲେ । ମାତ୍ର ଏହାର ଶେଷ ନିଷ୍ପତ୍ତି ଲଣ୍ଡନଠାରେ ହେଉଥିବା ଗୋଲଟେବୁଲ ବୈଠକରେ ରାଜନ୍ୟ-ମଣ୍ଡଳୀ ତରଫରୁ ପାରଳାଖେମୁଣ୍ଡୀର ମହାରାଜା କୃଷ୍ଣଚନ୍ଦ୍ର ଦେବ, ଖଲିକୋଟର ରାଜା ରାମଚନ୍ଦ୍ର ଦେବ ଏବଂ ଉତ୍କଳ ୟୁନିୟନ କନ୍‌ଫରେନ୍‌ସ ତରଫରୁ ଭୁବନା-ନନ୍ଦ ବାବୁଙ୍କ ବିଶେଷ ଚେଷ୍ଟା ଯୋଗୁଁ ହୋଇପାରିଥିଲା । ୧୯୩୨ ମସିହାର ଶେଷ ଭାଗରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାର ନିଷ୍ପତ୍ତି କରାଗଲା । ଏହି ସଂକ୍ରାନ୍ତରେ ଗଢ଼ା ହୋଇଥିବା ସବ୍‌କମିଟୀରେ ଭୁବନାନନ୍ଦ

ବାବୁ ଆଦିବାସୀମାନଙ୍କୁ ନବ ଓଡ଼ିଶାରେ ଅନ୍ତର୍ଭୁକ୍ତ କରିବାପାଇଁ ଦାବି କରିଥିଲେ । ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବାପରେ ମଧ୍ୟ ବିଚ୍ଛିନ୍ନ ଅଞ୍ଚଳଗୁଡ଼ିକୁ ଓଡ଼ିଶାରେ ମିଶାଇବା ପାଇଁ ସେ ଓ ତାଙ୍କ ଭାଇ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଆପ୍ରାଣ ଚେଷ୍ଟା କରିଥିଲେ । ଭୁବନାନନ୍ଦ ବାବୁ ମଧ୍ୟ ତାଙ୍କ ଭାଇଙ୍କ ପରି ଉତ୍କଳ ସମ୍ମିଳନୀର ସଭାପତି ରୂପେ ନିର୍ବାଚିତ ହୋଇଥିଲେ ।

**ଅନ୍ୟାନ୍ୟ :—**

ସାଂବାଦିକତା କ୍ଷେତ୍ରରେ ମଧ୍ୟ ଭୁବନାନନ୍ଦ ବାବୁଙ୍କର ବିଶେଷ ଯୋଗଦାନ ଥିଲା । ୧୯୨୭ରେ ସେ ଓଡ଼ିଶାରୁ "ୟଙ୍ଗ୍ ଉତ୍କଳ" ନାମକ ଏକ ପତ୍ରିକା ପ୍ରକାଶ କରିଥିଲେ । ବମ୍ବେରେ ଥିଲାବେଳେ ସେ ସାପ୍ତାହିକ (Roy's Weekly) "ରଏଜ୍ ଉଇକ୍ଲି" ପତ୍ରିକା ସହିତ ସଂପୃକ୍ତ ଥିଲେ । ଦିଲ୍ଲୀରେ ଥିଲାବେଳେ ସେ ନାନାଦି ଇଂରାଜୀ ପତ୍ରିକାରେ ବହୁ ଉପାଦେୟ ପ୍ରବନ୍ଧ ପ୍ରକାଶ କରିଥିଲେ । ସୁପ୍ରସିଦ୍ଧ ସାମ୍ବାଦିକ ସାର୍ ଉଷାନାଥ ସେନ୍ ତାଙ୍କର ଜଣେ ବିଶେଷ ବଂଧୁ ଥିଲେ । ରେଡ୍‌କ୍ରସ୍ ସଂସ୍ଥା ପ୍ରତି ତାଙ୍କର ବିଶେଷ ଅନୁରାଗ ଥିଲା ଏବଂ କେତେ ଦିନ ଯାଏ ସେ ଇଣ୍ଡିଆ ରେଡ୍‌କ୍ରସ ସୋସାଇଟିର ଭାଇସ୍-ପ୍ରେସିଡେଣ୍ଟ ଥିଲେ ।

ସେ ୧୯୫୮ ମସିହା ଫେବୃଆରୀ ୨୩ ତାରିଖରେ ୭୩ ବର୍ଷ ବୟସରେ ଦିଲ୍ଲୀଠାରେ ପ୍ରାଣତ୍ୟାଗ କରିଥିଲେ । ମୃତ୍ୟୁ ବେଳକୁ ସେ ରାଜ୍ୟସଭାର ସଦସ୍ୟ ଥିଲେ । ତାଙ୍କର ମରଦେହକୁ ସସମ୍ମାନେ ଦିଲ୍ଲୀର ନିଗମବୋଧଠାରେ ଚିତାଗ୍ନି ଦିଆଯାଇଥିଲା । ସେହିସମୟରେ ତାଙ୍କର ୫ ନମ୍ବର ଫିରୋଜସାହରୋଡ୍ ବାସଭବନରେ ସ୍ୱର୍ଗୀୟ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁ, ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ଓ ସ୍ୱର୍ଗୀୟ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୁର ଶାସ୍ତ୍ରୀ ପ୍ରମୁଖ ବହୁ ନେତୃବୃନ୍ଦ ଉପସ୍ଥିତ ଥିଲେ ଏବଂ ସ୍ୱର୍ଗୀୟ ଲାଲ ବାହାଦୁର ଶାସ୍ତ୍ରୀ ତାଙ୍କର ଅନ୍ୟତମ ଶବବାହକ ଥିଲେ ।

**ପରିବାର :–**

ସେ ବିଳମ୍ବରେ ପ୍ରାୟ ୩୯ ବର୍ଷ ବୟସରେ ଗଞ୍ଜାମର ବିଶିଷ୍ଟ କଂଗ୍ରେସ ନେତା ନିରଞ୍ଜନ ପଟ୍ଟନାୟକଙ୍କର ଭଗ୍ନୀ ରୁକ୍ମିଣୀ ଦେବୀଙ୍କୁ ବିବାହ କରିଥିଲେ । ତାଙ୍କର ଚାରି ଝିଅ ଓ ଦୁଇ ପୁଅ ଜୀବିତ ଅଛନ୍ତି । ପୁଅମାନଙ୍କ ନାମ ଶ୍ରୀ ଚିତ୍ତରଞ୍ଜନ ଦାସ, ବମ୍ବେରେ ଥିବା ଟାଟା ଏନର୍ଜି ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍‌ରେ

ଏକ ଉଚ୍ଚ ପଦାଧିକାରୀ ଏବଂ ଶ୍ରୀ ମୋତିରଞ୍ଜନ ଦାସ, ଦାମୋଦର ଭ୍ୟାଲି କର୍ପୋରେସନ୍‌ର ଚିଫ୍ ଇଂଜିନିୟର ଅଛନ୍ତି । ଝିଅମାନଙ୍କ ନାମ- ଶ୍ରୀମତୀ କମଳା ମହାନ୍ତି, ସ୍ବା- ଓଡ଼ିଶାର ଭୂତପୂର୍ବ ଉଠା ଜଳସେଚନ ବିଭାଗର ଡାଇରେକ୍ଟର ଶ୍ରୀ ହେମନ୍ତ କୁମାର ମହାନ୍ତି, ଶ୍ରୀମତୀ କୁମାରୀ ଦାସ, ସ୍ବା.- ଭାରତର ଭୂତପୂର୍ବ ଆଡିସନାଲ ଡେପୁଟି ଅଡିଟର ଜେନେରାଲ ଶ୍ରୀ କିଶୋରୀ ଚରଣ ଦାସ, ଶ୍ରୀମତୀ ପ୍ରମିଳା ପଟ୍ଟନାୟକ, ସ୍ବା.- ଡକ୍ଟର କ୍ଷୀରୋଦ କୁମାର ପଟ୍ଟନାୟକ, ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିଶନର ସଭ୍ୟ ଓ ଶ୍ରୀମତୀ ସରଳା ଦାସ, ସ୍ବା.- ଗୋପିକା ରଞ୍ଜନ ଦାସ ଦିଲ୍ଲୀରେ ଥିବା ଏନ୍.ସି.ଇ.ଆର.ଟି.ର ଶାସକୀୟ ଅଧିକାରୀ ।

—୦—

# ଭୁବନାନନ୍ଦ-ବିଚିତ୍ରାନନ୍ଦ

ଡଃ ରାଧାନାଥ ରଥ

୧୯୮୫ ମଇ ଚଉଦ ତାରିଖ ଓଡ଼ିଶାର ଦୁଇ ବରପୁତ୍ର ସ୍ୱର୍ଗୀୟ ଦେଶ ସେବକ ଭୁବନାନନ୍ଦ ଦାସ ଓ ଗରିବ ସେବକ ବିଚିତ୍ରାନନ୍ଦ ଦାସଙ୍କ ଜନ୍ମ ଦିବସ । ୧୮୮୫ ମଇ ୧୪ ତାରିଖ ସାବିତ୍ରୀ ଅମାବାସ୍ୟା ଦିନ ଏହି ଦୁଇ ଯାଆଁଳା ଭାଇଙ୍କର ପୁରୀ ଜିଲ୍ଲା ବାଲିପାଟଣା ଥାନା ଅନ୍ତର୍ଗତ କୁରୁଂଜିପୁର ଗ୍ରାମରେ କାନୁନ୍‌ଗୋ ଶ୍ରୀ ରାମଚନ୍ଦ୍ର ଦାସଙ୍କ ଔରସରେ ଜନ୍ମ । ଆଜିକୁ ଶହେ ବର୍ଷ ପୂରିଗଲା । ଏ ଦୁଇ ଭାଇଙ୍କ ମଧ୍ୟରୁ ଜଣେ ବିଲାତ ଫେରନ୍ତା ଇଂଜିନିୟର ଓ ଅନ୍ୟ ଜଣକ ଜଣେ ପ୍ରଖ୍ୟାତ ଆଇନଜୀବୀ ରୂପେ ଜୀବନ ଯାତ୍ରା ଆରମ୍ଭ କରିଥିଲେ । ଉଭୟଙ୍କର ଅସାଧାରଣ ଧୀଶକ୍ତି, ଜାତୀୟ ଜୀବନ ପ୍ରତି ଅନୁରକ୍ତି ଏବଂ ଉତ୍କଳ-ମାତା ପ୍ରତି ଅସାଧାରଣ ଭକ୍ତି ଥିଲା । ଭୁବନାନନ୍ଦ ବାବୁ ବମ୍ବେରେ ସ୍ୱାଧୀନ ଇଂଜିନିୟରିଂ ବ୍ୟବସାୟ କରିବା ସଙ୍ଗେ ସଙ୍ଗେ ଦେଶର ସ୍ୱାଧୀନତା ଆନ୍ଦୋଳନ ପ୍ରତି ଆକୃଷ୍ଟ ହେଲେ । ବିଚିତ୍ରାନନ୍ଦ ବାବୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ୧୯୩୭ରେ ଯେତେବେଳେ ବିଧାନ ସଭା ନିର୍ବାଚନ ହେଲା , ସେତେବେଳେ ସେ କଂଗ୍ରେସ ପକ୍ଷରୁ ବିଧାନ ସଭା ସଭ୍ୟ ରୂପେ ନିର୍ବାଚିତ ହୋଇଥିଲେ । ଭୁବନାନନ୍ଦ ବାବୁ ସ୍ୱାଧୀନତା ପରେ କନ୍‌ଷ୍ଟିଚୁଏଣ୍ଟ୍ ଆସେମ୍ବ୍ଲି, ଲୋକସଭା ଓ ରାଜ୍ୟସଭାର ସଭ୍ୟ ରୂପେ ତାଙ୍କର ଅସାଧାରଣ କୃତିତ୍ୱ ଦେଖାଇଥିଲେ । ଓଡ଼ିଆ ଭାଷୀ ବିଚ୍ଛିନ୍ନାଞ୍ଚଳମାନଙ୍କର ମିଶ୍ରଣ ଏବଂ ଓଡ଼ିଶା ଗଡ଼ଜାତ ଅଞ୍ଚଳଗୁଡ଼ିକର ମିଶ୍ରଣ ସଙ୍ଗେ ସଙ୍ଗେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ଦିଗରେ ତାଙ୍କର ନେତୃତ୍ୱ ବିଶେଷ ଉଲ୍ଲେଖ-ଯୋଗ୍ୟ ।

୧୯୨୮ରେ ଯେତେବେଳେ ସାଇମନ୍ କମିଶନ୍ ଭାରତକୁ ଆସିଲେ, ନିଖିଳ ଭାରତ କଂଗ୍ରେସ ପକ୍ଷରୁ ଉକ୍ତ କମିଶନ୍‌କୁ ବର୍ଜନ କରାଯାଇଥିଲା । କିନ୍ତୁ ଭୁବନାନନ୍ଦ ବାବୁ ସାଇମନ୍ କମିଶନ୍ ତଥା ୧୯୨୮ ଭାରତର ସର୍ବଦଳ ସମ୍ମିଳ-ନୀକୁ ଉତ୍କଳ ସମ୍ମିଳନୀର ସଭାପତି ରୂପେ ଯେଉଁ ସ୍ମାରକ ପତ୍ର ଦେଇଥିଲେ ଏବଂ ଯେଉଁ ଘୋଷଣା କରିଥିଲେ ଏଥିରେ ଓଡ଼ିଶା ଗଡ଼ଜାତ ସମେତ ସମଗ୍ର

ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଦୃଢ଼ ଦାବି ଉପସ୍ଥାପିତ କରିଥିଲେ । ଏହା ପୂର୍ବରୁ ଗଡ଼ଜାତର ମିଶ୍ରଣ ପାଇଁ କେହି କେବେ ଆନୁଷ୍ଠାନିକ ଭାବେ ଦାବି କରିନଥିଲେ ।

୧୯୩୨ରେ ବିଲାତରେ ଦ୍ୱିତୀୟ ଗୋଲ ଟେବୁଲ ସମ୍ମିଳନୀକୁ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଓ ଖଲି-କୋଟର ରାଜା ବାହାଦୁର ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଦେବଙ୍କ ସହିତ ସେ ବିଲାତ ଯାଇଥିଲେ । ଗଂଜାମର ପ୍ରଖ୍ୟାତ ଆଇନଜ୍ଞ ଓ ବାଗ୍ମୀ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ମହୋଦୟ ମଧ୍ୟ ଏମାନଙ୍କ ସହିତ ଯାଇଥିଲେ । ସାର୍ ସାମୁଏଲ୍ ହୋର୍ ସେତେବେଳେ ଭାରତ ମନ୍ତ୍ରୀ । ଲର୍ଡ ଇରଉଇନ୍ ଭାରତର ବଡ଼ଲାଟ । ଶ୍ରମିକ ଦଳର ନେତା ମିଷ୍ଟର ରାମ୍‌ସେ ମାକ୍‌ଡୋନାଲ୍‌ଡ ପ୍ରଧାନ ମନ୍ତ୍ରୀ । ଲର୍ଡ ସାଙ୍କି ଗୋଲ ଟେବୁଲ ସମ୍ମିଳନୀର ସଭାପତି । ପାରଳାଖେମୁଣ୍ଡି ମହାରାଜା ଏବଂ ଖଲିକୋଟ ରାଜା ବାହାଦୁରଙ୍କୁ ଭୁବନାନନ୍ଦ ବାବୁ ଓ ଲିଙ୍ଗରାଜ ବାବୁ ଓଡ଼ିଶା ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ବିଷୟରେ ଦାବି ଉପସ୍ଥାପିତ କରି-ବାରେ ଯେଉଁ ସାହାଯ୍ୟ କରିଥିଲେ ତାହା ଅବିସ୍ମରଣୀୟ । ୧୯୨୮ରେ ସାଇମନ୍ କମିଶନ୍‌ଙ୍କ ଅଟ୍‌ଲି ସବ୍ କମିଟୀକୁ ପାରଳାଖେମୁଣ୍ଡିର ମହାରାଜା, ବିହାରର ଡକ୍ଟର ସଚ୍ଚିଦାନନ୍ଦ ସିଂହ ଏବଂ ଶ୍ରୀଯୁକ୍ତ ଭୁବନାନନ୍ଦ ଦାସ ତଥା ଦେବାନ୍ ବାହାଦୁର ଲକ୍ଷ୍ମୀଧର ମହାନ୍ତି ଯେପରି ପ୍ରଭାବିତ କରିଥିଲେ ତାହା ଭୁଲିବାର ନୁହେଁ ।

ଭୁବନାନନ୍ଦ ବାବୁ ଭାରତ ପାର୍ଲାମେଣ୍ଟରେ ବୟୋଜ୍ୟେଷ୍ଠ ସଭ୍ୟ ରୂପେ ସମ୍ମାନିତ ହେଉଥିଲେ ଏବଂ ପବ୍ଲିକ୍ ଆକାଉଣ୍ଟସ୍ କମିଟୀର ବରାବର ଚେୟାର-ମ୍ୟାନ୍ ହୋଇ ରହୁଥିଲେ । ତାଙ୍କର ନିର୍ଭୀକତା ଓ ପାର୍ଲାମେଣ୍ଟାରିଆନ୍ ଭାବରେ ତାଙ୍କର ତଥ୍ୟ ସଂବଳିତ ବକ୍ତୃତା ପାଇଁ ସମସ୍ତେ ତାଙ୍କୁ ଖାତିର କରୁଥିଲେ । ୧୯୩୬ ଅପ୍ରେଲ ପହିଲା ତାରିଖରେ ବିଲାତ ସରକାରଙ୍କ ଦ୍ୱାରା ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଘୋଷିତ ହେବାରେ ତାଙ୍କର ଜୀବନର ସାଧନା ସାର୍ଥକ ହେଲା ବୋଲି ସେ ଘୋଷଣା କରିଥିଲେ ।

ତାଙ୍କ ଭ୍ରାତା ଶ୍ରୀ ବିଚିତ୍ରାନନ୍ଦ ଦାସ ଜଣେ ଅମାୟିକ ସ୍ୱଦେଶ ପ୍ରେମୀ, ଅତିଥି ପରାୟଣ, ବିଶେଷରେ ଦରିଦ୍ର ଦୁଃସ୍ଥ ଲୋକଙ୍କ ସେବା ପରାୟଣ, ଏବଂ ଜଣେ ସ୍ନେହୀ ବନ୍ଧୁ ଓ ନେତୃ ସ୍ଥାନୀୟ ଆଇନଜୀବୀ ରୂପେ ସମସ୍ତଙ୍କ ସ୍ନେହ,

ଶ୍ରଦ୍ଧା ଓ ସମ୍ମାନର ପାତ୍ର ଥିଲେ । ସେ ଓଡ଼ିଶାର ପ୍ରଥମ ଆଡ୍‌ଭୋକେଟ୍ ଜେନେରାଲ୍ ହୋଇଥିଲେ । ଓଡ଼ିଶା ବିଧାନ ସଭାରେ ବିରୋଧୀ ଦଳର ନେତା ହୋଇଥିଲେ । ସେ ତ୍ୟାଗବୀର ଓ ଦାନବୀର ବୋଲି ସବୁ ଶ୍ରେଣୀର ଲୋକଙ୍କ ପକ୍ଷରେ ଆଦରର ପାତ୍ର ଥିଲେ । ସେ ବହୁକାଳ ବିପତ୍ନୀକ ଜୀବନ ଯାପନ କଲେ । ତାଙ୍କ ଘର ଏକ ଅତିଥି ଶାଳା ହୋଇଥିଲା । ଦୀନବନ୍ଧୁ ଆଣ୍ଡ୍ରୁଜ୍‌ଙ୍କ ଠାରୁ ଆରମ୍ଭ କରି ପଣ୍ଡିତ କୁଂଜରୁଙ୍କ ପର୍ଯ୍ୟନ୍ତ, ଓଡ଼ିଶାର ସବୁ ଶ୍ରେଣୀର ସ୍ୱାଧୀନତା ସଂଗ୍ରାମୀ ଓ ଦେଶ ସେବକମାନେ ତାଙ୍କ ସାହାଯ୍ୟ ଓ ଆତିଥ୍ୟ ଲାଭ କରି ପାରୁଥିଲେ । ଶେଷ ଜୀବନରେ ଏକ ପ୍ରକାର ସେ ସନ୍ନ୍ୟାସ ଜୀବନ ଅତିବାହିତ କରି ବିଦାୟ ନେଲେ ।

ଏ ଦୁଇ ବିଶିଷ୍ଟ ଦେଶ ସେବକଙ୍କ ସ୍ମୃତି ରକ୍ଷା ଓଡ଼ିଶାବାସୀଙ୍କ ପକ୍ଷରେ ଏକ ଜାତୀୟ କର୍ତ୍ତବ୍ୟ ।

ସଂପାଦକ, ସମାଜ, କଟକ
[ଆକାଶବାଣୀ ସୌଜନ୍ୟରୁ]

—0—

# ଲବ କୁଶ ଦିହେଁ ଜାଆଁଳା ଭାଇ

## ବରିଷ୍ଠ ଶ୍ରୀ ରାଜକିଶୋର ଦାସ (ଅବସରପ୍ରାପ୍ତ)

"ଲବ କୁଶ ଦିହେଁ ଜାଆଁଳା ଭାଇ
ସାନ ବଡ଼ ବାରି ହୁଅଇ ନାହିଁ ।"

ଲବ କୁଶଙ୍କର ବିଷୟଟି ଅବଶ୍ୟ ରାମାୟଣର, ହେଲେ ଓଡ଼ିଶାର ଘରେ ଘରେ ଏହି ଉକ୍ତିଟି ପରିଚିତ । ଶହେବର୍ଷ ହେଲା ଓଡ଼ିଶାର ତଥା ଭାରତର ଜାତୀୟ ଜୀବନରେ ଯେଉଁ ଦୁଇଜଣ ଓଡ଼ିଆ ଜାଆଁଳା ଭାଇ ଦୀପ୍ତିମନ୍ତ ପ୍ରତିଭା ନେଇ ସାମାଜିକ ଜୀବନକୁ ସମୃଦ୍ଧ ଓ ପ୍ରଜ୍ୱଳିତ କରିଥିଲେ, ସେ ଦୁଇଜଣ ହେଲେ ସମ୍ମାନନୀୟ ପ୍ରାତଃସ୍ମରଣୀୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଓ ମିଷ୍ଟର ଭୁବନାନନ୍ଦ ଦାସ । ସ୍ୱାମୀ ବିଚିତ୍ରାନନ୍ଦ ଦାସ ଥିଲେ ବିଖ୍ୟାତ ଓକିଲ ଓ ଓଡ଼ିଶା ହାଇକୋର୍ଟର ଆଡ୍‌ଭୋକେଟ୍ ଜେନେରାଲ୍ । ସେ ଥିଲେ ଉତ୍କଳ ଗୌରବ ମିଷ୍ଟର୍ ମଧୁସୂଦନ ଦାସଙ୍କର ପ୍ରିୟଶିଷ୍ୟ । ମିଷ୍ଟର୍ ଭୁବନାନନ୍ଦ ଦାସ ବିଲାତର ଗ୍ଲାସ୍‌ଗୋ ବିଶ୍ୱବିଦ୍ୟାଳୟରୁ ବିଦ୍ୟୁତ୍ ଇଂଜିନିଅରିଂରେ ଶ୍ରେଷ୍ଠ ଡିଗ୍ରୀ ହାସଲ କରି ଓଡ଼ିଶାକୁ ଫେରିବା ପରେ ଓଡ଼ିଶା ତଥା ଭାରତରେ ବିଦ୍ୟୁତ୍ କେନ୍ଦ୍ରମାନ ପ୍ରତିଷ୍ଠା କରିବାରେ ମୁଖ୍ୟ ସହାୟକ ହୋଇଥିଲେ । ଏ ଦୁଇ ଜାଆଁଳା ଭାଇ ସ୍ୱାମୀ ବିଚିତ୍ରାନନ୍ଦ ଓ ମିଷ୍ଟର୍ ବି. ଦାସ ନାମରେ ପରିଚିତ ଥିଲେ ଓ ଭାରତର ସ୍ୱାଧୀନତା ଆନ୍ଦୋଳନ ତଥା ତତ୍କାଳୀନ ଜାତୀୟ କଂଗ୍ରେସରେ ଯୋଗଦାନ କରିଥିଲେ । ସମାଜ ସେବା, ଦେଶ ସେବା ଓ ଭାରତ ସ୍ୱାଧୀନତା ପାଇଁ ସ୍ୱାମୀ ବିଚିତ୍ରାନନ୍ଦ ଓ ମିଷ୍ଟର୍ ଭୁବନାନନ୍ଦଙ୍କର ଅବଦାନ ଜାତିର ଇତିହାସ ପୃଷ୍ଠାରେ ଅବିସ୍ମରଣୀୟ ହୋଇ ରହିବ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଏଇ ଦୁଇ ଭାଇଙ୍କର ଉଦ୍ୟମ ଥିଲା ଅସୀମ ।

ବିଚିତ୍ରାନନ୍ଦ ଓ ଭୁବନାନନ୍ଦଙ୍କର ବଡ଼ ଭାଇଙ୍କ ନାଁ ରାଘବାନନ୍ଦ । ଘର ତାଙ୍କର ପୁରୀ ଜିଲ୍ଲାରେ । ଗାଁ କୁରୁଞ୍ଜିପୁର । ଆମ ଗାଁ ବାଗଲପୁର ଠାରୁ ତାହା ପ୍ରାୟ ଦୁଇ କିଲୋମିଟର । ରାଘବାନନ୍ଦଙ୍କ ପୁଅ ରାଧାକୃଷ୍ଣ ମୋର ବାଲ୍ୟବନ୍ଧୁ ଥିଲେ । ଏଥିପାଇଁ ତାଙ୍କ ଘରକୁ ମୁଁ ଯାଉଥିଲି ଓ ତାଙ୍କ ପରିବାର ସହିତ

ମୋର ଘନିଷ୍ଠତା ଥିଲା । ସମୟ କ୍ରମେ ଏହି ପରିବାର କଟକର ଡଗରପଡ଼ା-ଠାରେ ତାଙ୍କର ସ୍ଥାୟୀ ବାସଗୃହ ନିର୍ମାଣ କଲେ । ତାଙ୍କର ଏହି ବାସଗୃହ ଦେଶ ସେବା ଓ ସମାଜ ସେବାର ଏକ ମୁଖ୍ୟ କର୍ମସ୍ଥଳୀରେ ପରିଣତ ହୋଇଥିଲା । ଏପରିକି ଏହି ବାସ ସ୍ଥାନକୁ "Eternal guest house" ବା ଚିର ଅତିଥିଶାଳା ବୋଲି କୁହାଯାଉଥିଲା । ବିଚିତ୍ରାନନ୍ଦ ଓ ଭୁବନାନନ୍ଦ ଜାତୀୟ କଂଗ୍ରେସ ତଥା ଜାତୀୟ ଆନ୍ଦୋଳନର ଦୁଇଟି ମୁଖ୍ୟ ସ୍ତମ୍ଭ ଥିଲେ । ସ୍ୱାମୀ ବିଚିତ୍ରାନନ୍ଦ ୧୯୩୭ ମସିହାରେ ଓଡ଼ିଶା ବିଧାନସଭାକୁ କଂଗ୍ରେସ ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ ଓ ମିଷ୍ଟର୍ ଭୁବନାନନ୍ଦ ବହୁ ବର୍ଷ କେନ୍ଦ୍ର ଆସେମ୍ବ୍ଲି, ଭାରତର ଶାସନ ବିଧାୟକ ସଭା ଓ ପାର୍ଲିଆମେଣ୍ଟ୍‌ର ସଦସ୍ୟ ହୋଇଥିଲେ । ଡକ୍ଟର ହୃଦୟନାଥ କୁଞ୍ଜରୁ, ପଣ୍ଡିତ ମଦନମୋହନ ମାଲବ୍ୟ, ପଣ୍ଡିତ ମୋତିଲାଲ ନେହରୁ ଓ ତତ୍କାଳୀନ ବହୁ ଭାରତୀୟ ନେତା ଓ ପାର୍ଲିଆମେଣ୍ଟାରିଆନ୍‌ଙ୍କର ସେ ଥିଲେ ସମସାମୟିକ । ପାର୍ଲିଆମେଣ୍ଟାରିଆନ୍ ଭାବରେ ତାଙ୍କର ଦୀର୍ଘ ବର୍ଷର ଅଭିଜ୍ଞତା ପାଇଁ ତାଙ୍କୁ "Father of the Indian Parliament" ବୋଲି କୁହାଯାଏ । ଯେତେବେଳେ ଖବ୍ ଅଳ୍ପ ସଂଖ୍ୟକ ଓଡ଼ିଆ ଉଚ୍ଚଶିକ୍ଷା ପାଇଁ ବିଲାତ ଯାଉଥିଲେ ସେମାନଙ୍କ ମଧ୍ୟରେ ଭୁବନାନନ୍ଦ ଥିଲେ ଅନ୍ୟତମ । ବିଲାତରେ ତାଙ୍କର ସମସାମୟିକ ଥିଲେ ବିଶିଷ୍ଟ ଓଡ଼ିଆ, ପ୍ରଫେସର ପ୍ରାଣକୃଷ୍ଣ ପରିଜା, ମି : ଶ୍ୟାମଚରଣ ତ୍ରିପାଠୀ ଓ ମିଷ୍ଟର ସଚ୍ଚିଦାନନ୍ଦ ରାୟ । ସେତିକିବେଳେ ତାଙ୍କର ଆଉ ଜଣେ ବନ୍ଧୁ ସାରଙ୍ଗଧର ଦାସ ଆମେରିକାର କାଲିଫର୍ଣ୍ଣିଆଠାରେ କୃଷି ବିଜ୍ଞାନରେ ଉଚ୍ଚତମ ଡିଗ୍ରୀ ପାଇଁ ଯାଇଥିଲେ । ବିଲାତରେ ମି : ଦାସ ଗ୍ଲାସଗୋ ବିଶ୍ୱ-ବିଦ୍ୟାଳୟରେ ପଢୁଥିଲା ବେଳେ ପ୍ରଫେସର ପରିଜା ଓ ମିଷ୍ଟର ତ୍ରିପାଠୀ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ପଢୁଥିଲେ । ମି : ରାୟ ଅକ୍‌ସଫୋର୍ଡ ବିଶ୍ୱବିଦ୍ୟାଳୟରେ ପଢୁଥିଲେ । ଏହି ଚାରିବନ୍ଧୁଙ୍କ ମଧ୍ୟରେ ଘନିଷ୍ଠ ଆତ୍ମୀୟତା ଥିଲା ।

ଜାତୀୟ ସଂଗ୍ରାମର ସ୍ରୋତରେ ନିଜର ଜୀବନକୁ ଉତ୍ସର୍ଗ କରିବା ସାଙ୍ଗେ ସାଙ୍ଗେ ତାଙ୍କର ବିଦ୍ୟୁତ୍ ଇଂଜିନିୟରିଂର ସମସ୍ତ ଜ୍ଞାନକୁ ସେ ଓଡ଼ିଶା ତଥା ଓଡ଼ିଶା ବାହାରେ ବିଦ୍ୟୁତ୍ ଶକ୍ତିର ଉନ୍ନତି ପାଇଁ ଉପଯୋଗ କରିଥିଲେ । ପୁରୀ ଇଲେକ୍ଟ୍ରିକ୍ ସପ୍ଲାଇ କମ୍ପାନୀ ତାଙ୍କର ଅନ୍ୟତମ କୃତି । ମିଷ୍ଟର ବି. ଦାସ

ତାଙ୍କ ଜୀବନର ବିଶେଷ ଭଗ ଦିଲ୍ଲୀଠାରେ କଟାଇଥିଲେ । ଓଡ଼ିଶାର ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଓ ନେତା ସ୍ୱର୍ଗତଃ ନିରଞ୍ଜନ ପଟ୍ଟନାୟକଙ୍କର ଭଉଣୀଙ୍କୁ ସେ ବିବାହ କରିଥିଲେ । ପାର୍ଲିଆମେଣ୍ଟରେ ବିଭିନ୍ନ ବିଷୟରେ ଆଲୋଚନାରେ ସେ ମୁଖ୍ୟ ଭଗ ନେଉଥିଲେ । ବିଶେଷ କରି ଶ୍ରମିକମାନଙ୍କର ଓ ଗୋତି ଶ୍ରମିକ-ମାନଙ୍କର ଆନ୍ଦୋଳନ ତଥା ଆଇନ୍ ବିଷୟରେ ତାଙ୍କର ସ୍ୱତନ୍ତ୍ର ଚର୍ଚ୍ଚା ଥିଲା । ୧୯୨୯ ମସିହାରେ ଜେନେଭଠାରେ ଅନୁଷ୍ଠିତ ହୋଇଥିବା Forced Labour Conventionର ଜଣେ ଭରତୀୟ ସଭ୍ୟ ଭବରେ ସେ ଜେନେଭ ଯାଇଥିଲେ । ପୂର୍ବତନ ଗଡ଼ଜାତମାନଙ୍କରୁ ହୀନ ଗୋତିପ୍ରଥାର ବିଲୋପ ପାଇଁ ଶାସନ ବିଧାୟକ ସଭରେ ସେ ଏକ ମର୍ମସ୍ପର୍ଶୀ ତଥ୍ୟ ଉପସ୍ଥାପନ କରିଥିଲେ ଓ ଏହା ସମାଜକୁ କିପରି ଭବରେ କଳୁଷିତ କରୁଛି ତାହା ଦର୍ଶାଇ-ଥିଲେ । ଏହି ଦିନଟି ଥିଲା ଶାସନ ବିଧାୟକ ସଭର ୧୯୪୭ ମସିହା ମେ' ମାସ ପହିଲାର ଅଧିବେଶନ । ବିଶ୍ୱ ଶ୍ରମିକ ଦିବସରେ ତାଙ୍କର ଏହି ବିବରଣୀ ଥିଲା ଏକ ପ୍ରତୀକପୂର୍ଣ୍ଣ ପ୍ରବଚନ । ତାଙ୍କ ପରି ନିଷ୍ଠାବାନ୍ ପାର୍ଲିଆମେଣ୍ଟାରିଆନ୍ ପାଇଁ ଓଡ଼ିଶା ଗର୍ବ ଅନୁଭବ କରେ । ସ୍ୱର୍ଗତଃ ନିରଞ୍ଜନ ପଟ୍ଟନାୟକଙ୍କର ମୁଁ ସାନ ସଙ୍ଗୁ । ସେଥିପାଇଁ ସେ ଥିଲେ ମୋର ସମ୍ପର୍କୀୟ । ତାଙ୍କ ସହିତ ମୋର ଖୁବ୍ ଆତ୍ମୀୟତା ଥିଲା । ସେ ଥିଲେ ଭରି ମେଳାପି ଓ ସ୍ନେହଶୀଳ ବ୍ୟକ୍ତି । ଦେଶର ଜଣେ ଖ୍ୟାତି ସମ୍ପନ୍ନ Electrical Consultant Engineer, ପୁଣି ଦୀର୍ଘକାଳ ପାର୍ଲିଆମେଣ୍ଟର ସଦସ୍ୟ । କିନ୍ତୁ ବ୍ୟବହାରରେ ସେ ଥିଲେ ଖୁବ୍ ଅମାୟିକ, ଖୁବ୍ ସରଳ ।

ଜାଆଁଳା ଭଇ ସ୍ୱାମୀ ବିଚିତ୍ରାନନ୍ଦଙ୍କ ଜୀବନ ଥିଲା ସେବା ଓ ତ୍ୟାଗର ଜୀବନ । ସମସ୍ତଙ୍କ ପାଖରେ ସେ ଥିଲେ ସମ୍ମାନନୀୟ "ସ୍ୱାମୀଜୀ" । ସେ ଉଚ୍ଚକୋଟୀର ଆଇନଜ୍ଞ ଥିଲେ ଓ ବ୍ୟକ୍ତିଗତ ଜୀବନରେ ଥିଲେ ଖୁବ୍ ନୀତିବାଦୀ । ମଧ୍ୟ ବୟସରେ ପତ୍ନୀଙ୍କୁ ହରଇ ସେ ସନ୍ନ୍ୟାସୀର ଜୀବନ ଯାପନ କରୁଥିଲେ । ସେ ଅବସର ସମୟରେ ଗେରୁଆ ଲୁଗା, ଗେରୁଆ ପଞ୍ଜାବି ଓ ଗେରୁଆ ଗାନ୍ଧୀ ଟୋପି ପିନ୍ଧୁଥିଲେ । ସେ ଖୁବ୍ ସ୍ପଷ୍ଟବାଦୀ ଥିଲେ ଓ ନିଜର ମନୋଭବକୁ ଅକପଟ ଭବରେ ପ୍ରକାଶ କରୁଥିଲେ । ସମାଜରେ ଦଳିତ, ଅବହେଳିତ ଓ ନିର୍ଯାତିତଙ୍କ ପାଇଁ ତାଙ୍କ ପ୍ରାଣ ସଦାସର୍ବଦା ବ୍ୟଥିତ ହେଉଥିଲା । ଯେ କୌଣସି ସମାଜ ମଙ୍ଗଳ କାର୍ଯ୍ୟ ତାଙ୍କର ଆଶୀର୍ବାଦ ଲଭ

କରୁଥିଲେ । କଟକ ଡଗରପଡ଼ାଠାରେ ସେ ଅନାଥ ମହିଳାଙ୍କ ପାଇଁ ଗୋଟିଏ ଅନାଥ ଆଶ୍ରମ ପ୍ରତିଷ୍ଠା କରିଥିଲେ । ଜଣେ ପ୍ରସିଦ୍ଧ ଆଡ୍‌ଭୋକେଟ୍ ଓ ଆଡ୍-ଭୋକେଟ୍ ଜେନେରାଲ ଭାବରେ ସେ ବହୁ ଅର୍ଥ ଉପାର୍ଜନ କରିଥିଲେ ମଧ୍ୟ ଅର୍ଥର ଲାଳସା ତାଙ୍କୁ ଲେଶ ମାତ୍ର ସ୍ପର୍ଶ କରି ନ ଥିଲା । ଆଇନ୍ ବ୍ୟବସାୟ କଲାବେଳେ ମୁଁ ବହୁବାର ତାଙ୍କର ସାନ୍ନିଧ୍ୟ ଲାଭ କରିବାର ସୌଭାଗ୍ୟ ଅର୍ଜନ କରିଛି । ଘଟଣାଚକ୍ରରେ ମୁଁ ଓଡ଼ିଶା ହାଇକୋର୍ଟର ବିଚାରପତି ଥିବାବେଳେ ପୂଜ୍ୟ ସ୍ୱାମୀଜୀ କେତେକ ମକଦ୍ଦମା ମୋର ଇଜଲାସ୍‌ରେ ପରିଚାଳନା କରି-ଥିଲେ । ଏହା ଥିଲା ମୋ ପାଇଁ ପରମ ସ୍ମୃତି ଓ ସୌଭାଗ୍ୟର କଥା । ଏହା ମୋର ଚିର ସ୍ମୃତି ହୋଇ ରହିଛି ଓ ରହିବ ।

ସ୍ୱାମୀ ବିଚିତ୍ରାନନ୍ଦ ଓ ମିଷ୍ଟର ଭୁବନାନନ୍ଦ, ଦୁଇ ମହାନ ଜାଆଁଳା ଭାଇଙ୍କର ଜନ୍ମ ହେବାର ଶହେବର୍ଷ ହୋଇଗଲା । ଏହି ଉପଲକ୍ଷେ ଏଇ ଦୁଇ ମହାନ ଆତ୍ମାଙ୍କ ପ୍ରତି ମୁଁ ମୋର ଅନ୍ତରର ଶ୍ରଦ୍ଧା, ଭକ୍ତି ଓ ସମ୍ମାନ ନିବେଦନ କରୁଛି ।

—o—

# ସ୍ୱାମୀଜୀ ଓ ବି.ଦାସ—ଅଭିନ୍ନ ଆତ୍ମା

ସୁରେନ୍ଦ୍ର ନାଥ ଦ୍ୱିବେଦୀ

**ଶ୍ୟା**ମିଜ ଟୁଇନ୍‌ସ୍‌ଙ୍କର ଗପ ରହିଛି । ଦୁଇ ଜୀବନ ଅଭିନ୍ନ ଶରୀର । ସ୍ୱାମୀ ବିଚିତ୍ରାନନ୍ଦ ଦାସ ଏବଂ ଭୁବନାନନ୍ଦ ଦାସ ଯାଆଁଳା ଭାଇ । ଭିନ୍ନ ଶରୀର, ଜଣେ ଜ୍ୟେଷ୍ଠ ଆରଟି କନିଷ୍ଠ । ପରସ୍ପରକୁ ଡାକୁଥିଲେ ଲବକୁଶ । ଦେହ ଅଲଗା, ମାତ୍ର ଆତ୍ମା ସତେକି ଏକ ଥିଲା । ଯେ ନ ଦେଖିଛି, ଘନିଷ୍ଠ ସମ୍ପର୍କରେ ନ ଆସିଛି, ସେ ଜାଣି ପାରିବ ନାହିଁ । ଏହି ଆତ୍ମାରୁ କିଭଳି ଏକାଭଳି ସ୍ୱର, ଏକ ଉଦାରତା ଏବଂ ଆଚାର ବିଚାରରେ ଏକ ସହୃଦୟତା ଓ ଆତ୍ମୀୟତା ସ୍ୱାଭାବିକ ରୂପେ ପ୍ରକାଶ ପାଉଥିଲା । ଆମେ ସବୁ ତାଙ୍କ ସମ୍ପର୍କରେ ଆସିଲା ବେଳକୁ ସେମାନେ ପ୍ରୌଢ଼, ତଥାପି ବରାବର ଭୁଲ ହୁଏ ଏକୁଟିଆ ତାଙ୍କ ଭିତରୁ ଜଣକୁ ଦେଖି । ପାଖକୁ ଯାଇ ସଂଶୟ ଦୂର କରିବାକୁ ହୁଏ; କିମ୍ବା କଥା ଶୁଣିଲେ ବୁଝିହୁଏ ଥଙ୍ଗେଇ ଥଙ୍ଗେଇ କଥା କହୁଥିବା ବ୍ୟକ୍ତି ହେଉଛନ୍ତି: ବି.ଦାସ–ଭୁବନାନନ୍ଦ ଦାସ । ଓଡ଼ିଶା ଲୋକଙ୍କ ପକ୍ଷରେ ସ୍ୱାମୀଜୀଙ୍କୁ ଚିହ୍ନିବା ନିମନ୍ତେ କିଛି ଅସୁବିଧା ନ ଥିଲା । କାରଣ ଓଡ଼ିଶା, ବିଶେଷ ଭାବରେ କଟକ ଥିଲା ତାଙ୍କର କର୍ମକ୍ଷେତ୍ର । ମାତ୍ର ବି.ଦାସଙ୍କର କର୍ମକ୍ଷେତ୍ର ମୁଖ୍ୟତଃ ଦିଲ୍ଲୀ ଏବଂ ଭାରତ ଦେଶ । ସେ କିନ୍ତୁ ମଝିରେ ମଝିରେ ଯେବେ ଆସନ୍ତି, ସେତେବେଳେ ସାଧାରଣ ସଭା ସମ୍ମିଳନୀରେ ଦୁହେଁ ଜୁଟ ହେଲେ ଲୋକେ ଅଳ୍ପକ୍ଷଣ ଲାଗି ଗୋଳକ ଧନ୍ଦାରେ ପଡ଼ିଯାଆନ୍ତି । କେନ୍ଦ୍ର ଆସେମ୍ବ୍ଲି ଓ ପାର୍ଲାମେଣ୍ଟ ଆଦି ଯୋଗୁଁ ଭୁବନାନନ୍ଦ ବାବୁ ଜଣାଥିଲେ ବି.ଦାସ ରୂପେ । ସ୍ୱାମୀଜୀ ହେଲେ ବି.ଏନ୍.ଦାସ । ତେଣୁ ନାମର ଗୋଳମାଳ କିଛି ରହୁନଥିଲା ଦିହିଁଙ୍କ ଠଉରାଇବାରେ । ଶେଷ ଜୀବନକୁ ଅବଶ୍ୟ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଶାରୀରିକ ବିଶେଷ ଭାବରେ ମୁଖ କେଶର ରୂପ ଦିହିଁଙ୍କ ଭିତରେ ପାର୍ଥକ୍ୟଟା ପରିସ୍ଫୁଟ କରି ଦେଇଥିଲା । ଯେ ଦେଖୁଥିଲେ, ନିକଟରେ ଆସିଥିଲେ, ତାଙ୍କର କିଛି ଭୁଲ କରିବାର ନ ଥିଲା ।

ଦିହିଁଙ୍କ ସହିତ ଅତି ଘନିଷ୍ଠ ଭାବରେ ସମ୍ପର୍କ ରଖିବାର ସୁଯୋଗ ମୋର ଘଟିଥିଲା । ବୟସର ବ୍ୟବଧାନ ଓ ରାଜନୀତିକ ମତଭେଦ ଏଥିରେ କୌଣସି

ପ୍ରତିବନ୍ଧକ ହୋଇ ନ ଥିଲା । ତାଙ୍କର ପୁତ୍ର କନ୍ୟା ଆତ୍ମୀୟ ସ୍ୱଜନ ବ୍ୟକ୍ତିଗତ ଜୀବନ ସମ୍ବନ୍ଧରେ ଲେଖିବେ ଏବଂ ଜୀବନୀ ହୁଏତ ପ୍ରକାଶ ପାଇବ । କିନ୍ତୁ ସେମାନେ ନିଜ କର୍ମସ୍ଥଳୀ ଓ ସହକର୍ମୀ ତଥା ସହଯୋଗୀଙ୍କଠାରେ ଯେଉଁ ବ୍ୟକ୍ତିଗତ ଛାପ ପକାଇ ଯାଇଛନ୍ତି, ତା'ର ପଟାନ୍ତର ନାହିଁ । ମାନବିକ ପ୍ରେମ, ସ୍ନେହ, କରୁଣା ଓ ଦୟା ଯେପରି ଥିଲା ଅଙ୍ଗଭୂଷଣ ; ପ୍ରତ୍ୟେକ କାର୍ଯ୍ୟରେ ତାହା ପ୍ରତିଫଳିତ ହେଉଥିଲା । ଦୁହେଁ କେବେ କାହାରିଙ୍କୁ କ୍ରୋଧାନ୍ୱିତ ହୋଇ କିଛି କହିଥିବାର ଜଣା ନାହିଁ—ରାଗିବା ବୋଧହୁଏ ତାଙ୍କ ଦ୍ୱାରା ହୋଇ ପାରୁ ନ ଥିଲା । ଓଡ଼ିଆ ସଂସ୍କୃତିର ଦୁହେଁ ଥିଲେ ପ୍ରମୂର୍ତ୍ତ ପ୍ରତୀକ ।

ସ୍ୱାମୀଜୀ ବିଶ୍ୱାସ କରୁଥିଲେ ଓଡ଼ିଶାର ଗ୍ରାମୀଣ ସଂସ୍କୃତିର ମୂଳଭିତ୍ତି ହେଲା, ଆମର କୃଷିଭିତ୍ତିକ ସାମନ୍ତକାଳୀନ ପ୍ରଥା । ପାଶ୍ଚାତ୍ୟ ଓ ଧନାଢ୍ୟ ସଭ୍ୟତାର ଚାପରେ ତାହା ଭାଙ୍ଗି ନାହିଁ । ଓଡ଼ିଶାର ପ୍ରାଣ ରହିଛି ସେଠି । ଯେଉଁ ପରମ୍ପରାପୁଷ୍ଟ ସଙ୍ଗତିସମ୍ପନ୍ନ ଶ୍ରେଣୀ ରହିଛନ୍ତି, ସେମାନେ ହିଁ ସଂସ୍କୃତିର ରକ୍ଷା କରିଛନ୍ତି । ଓଡ଼ିଶାରେ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିତ୍ୱକାଳରେ ଗ୍ରାମୀଣ ମଧ୍ୟବିତ୍ତ ଶ୍ରେଣୀର ଯେ ବିଲୋପ ଘଟିଲା, ସେଥିରେ ତାଙ୍କର ପ୍ରାଣ ବ୍ୟଥିତ ହୋଇ ପଡ଼ିଥିଲା । ସେ ଭୂମି ସଂସ୍କାରର ବିରୋଧୀ ନ ଥିଲେ; ମାତ୍ର ମଧ୍ୟବର୍ତ୍ତୀ ଶ୍ରେଣୀର ଉଚ୍ଛେଦକୁ ସେ ସହ୍ୟ କରିପାରୁ ନ ଥିଲେ । ଥରେ ଦିଲ୍ଲୀ ଯାଇଥିଲା ବେଳେ ମୋ ବାସସ୍ଥଳୀରେ ଯାଇ ପହଞ୍ଚିଲେ ଏବଂ ବଡ଼ ଛଳ ଛଳ ନୟନରେ କହିଲେ, "ନବର ପୁଅ ବଞ୍ଚିଥିଲେ କ'ଣ ସେ ଏଭଳି କରିଥାଆନ୍ତା !" ଓଡ଼ିଶାର ସାଂସ୍କୃତିକ ପରମ୍ପରା ଆଉ ରକ୍ଷା ହୋଇ ପାରିବନାହିଁ— ଏ କଥାଟି ତୁମେମାନେ ବୁଝି ପାରୁନାହଁ ! ବି.ଦାସଙ୍କ ଘରେ ସେ ଥାଆନ୍ତି । ମୋର ୨୧, କ୍ୟାନିଙ୍ଗ୍ ଲେନ୍‌ରୁ କିଛି ଦୂର ନୁହେଁ । ଡାକି ପଠାଇଥିଲେ ମୁଁ ଯାଇଥାଆନ୍ତି; ମାତ୍ର ହୃଦୟର ଆବେଗକୁ ସମ୍ଭାଳି ନ ପାରି ତାହା ବ୍ୟକ୍ତ କରିଦେବା ନିମନ୍ତେ ଧାଇଁ ଆସିଲେ ।

ସେ ଯେପରି ଅତିଥି ପରାୟଣ ଥିଲେ ସେହିପରି କରୁଣା ସାଗର । ଅନାଥାଶ୍ରମ ପ୍ରତିଷ୍ଠା ତା'ର ଏକ ସାକ୍ଷାତ ନିଦର୍ଶନ । କଟକରେ ତାଙ୍କ ଘର ଥିଲା ବେସରକାରୀ ଅତିଥିଶାଳା । ବ୍ରିଟିଶ୍ ଅମଳ; କୌଣସି ବାହାର ଅତିଥି ବିଶେଷତଃ ରାଜନୀତି ସହ ସମ୍ପୃକ୍ତ ବ୍ୟକ୍ତିଙ୍କ ରହଣି ସ୍ଥାନ ସ୍ଥିର କରିବା ଅତ୍ୟନ୍ତ କଷ୍ଟକର ଥିଲା । ଯେ ଆଶ୍ରା ଦେବ କିମ୍ବା ଡାକବଙ୍ଗଳା ଆଦିରେ

ରଖାଇବ ସେ ହେବ ସରକାରର ଚକ୍ଷୁଶୂଳ । ଦୁଇଭଉ ଜେଲବରଣ କରି ନ ଥିଲେ ସତ୍ୟ; ଜେଲ ଯିବାକୁ ଭୟ କରି କୌଣସି ସାହାଯ୍ୟ ଦେବା ନିମନ୍ତେ ସେ କେବେ କୁଣ୍ଠିତ ହେଉ ନ ଥିଲେ । ସେଥି ନିମନ୍ତେ ଭାରତର ବହୁ ବିଶିଷ୍ଟ ବ୍ୟକ୍ତି ଏପରିକି ଦୀନବନ୍ଧୁ ଆଣ୍ଡ୍ରୁଜ୍ ବି ତାଙ୍କ ଘରେ ରହିଥିଲେ । ସ୍ୱାମୀଜୀ ଅସହଯୋଗ ଆନ୍ଦୋଳନରେ ଯୋଗଦେଇଥିଲେ ମାତ୍ର ବି.ଦାସ ଜଣେ କଂଗ୍ରେସ ତଥା ଜାତୀୟ ଆନ୍ଦୋଳନର ସମର୍ଥକ ହୋଇଥିଲେ ସୁଦ୍ଧା କେବେହେଲେ ଆଇନ୍ ଅମାନ୍ୟ ଓ ଜେଲବରଣ କରିବା କାର୍ଯ୍ୟ ପସନ୍ଦ କରି ନଥିଲେ । ଦୁହେଁ-ଯାକ ଉଗ୍ର ଜାତୀୟବାଦୀ ମନେ ହେଉଥିଲେ ହେଁ, ଉଦାରନୀତିକ ରାଜନୀତିଜ୍ଞ ଥିଲେ ।

ଦେଶପ୍ରୀତିର ଏକ ଦୃଷ୍ଟାନ୍ତ ଏଥିରେ ଲେଖିବା ଉଚିତ ମନେ କରୁଛି । କୌଣସି ସ୍ୱାଧୀନତା ଆନ୍ଦୋଳନର ବିବରଣୀରେ ଏହା ମିଳି ନ ପାରେ ।

୧୯୪୨ରେ ବମ୍ବେରେ ଭାରତ ଛାଡ଼ ଆନ୍ଦୋଳନ ପ୍ରସ୍ତାବ ପାସ୍ ହେବା ଘଡିରେ ଗାନ୍ଧୀଜୀ ଆଦିଙ୍କୁ ଗିରଫ କରାଗଲା । ଓଡ଼ିଶାରୁ ମାଳତୀ ଚୌଧୁରୀ ଓ ମୁଁ ନିଖିଳ ଭାରତ କଂଗ୍ରେସ କମିଟୀର ଏହି ଅଧିବେଶନରେ ଯୋଗ ଦେଇ-ଥିଲୁ । ଆମ ନାଁରେ କଟକରେ ଓ୍ୱାରେଣ୍ଟ ବାହାରି ଥିଲା ଏବଂ ଅନ୍ୟ ସାଙ୍ଗ ସାଥୀ ଗିରଫ ହୋଇଗଲେ । ଆମେ ବମ୍ବେଠାରେ ସ୍ଥିର କରି ଆସିଲୁ ଗିରଫ ନ ହୋଇ ଆତ୍ମଗୋପନ କରି ଅଗଷ୍ଟ ବିପ୍ଳବର ପରିଚାଳନା କରିବା । ବମ୍ବେରୁ ଖଡ଼ଗପୁର ବାଟେ ଆସିଲେ ଗିରଫ ଅବଶ୍ୟମ୍ଭାବୀ ଭାବି ଆମେ ରାୟପୁର ବିଜୟନଗରମ୍ ଦେଇ ଆସି ଭୁବନେଶ୍ୱରରେ ଓହ୍ଲାଇଲୁ । ଭୁବନେଶ୍ୱର ସେତେବେଳକୁ ଅତି ଛୋଟିଆ ଜାଗା ଥିଲା । ଆମ ଦୁର୍ଭାଗ୍ୟକୁ ଭୁବନେଶ୍ୱର ଷ୍ଟେସନରେ ପୁଲିସ୍ ଇନ୍ସ୍‌ପେକ୍ଟରଙ୍କୁ ଦେଖିଲୁ । କୌଣସି ପ୍ରକାରେ ତାଙ୍କ କବଳରୁ ଉତୁରି ଆସିଲୁ । ଏତେ ରାତିରେ ଯାଉ କେଉଁଠିକି ? ଗୋରୁଗାଡ଼ିବାଲା ଆମକୁ ଯାତ୍ରୀ ବୋଲି ଧରି ନେଇଥିଲା । ତାକୁ କହି ଭୁବନାନନ୍ଦ ବାବୁଙ୍କ ବାସଭବନରେ ପହଞ୍ଚିଲୁ । ସେମାନେ ସମସ୍ତେ ଶୋଇଯାଇଥିଲେ । ମାଳତୀ ଦେବୀଙ୍କ ଡାକ ଶୁଣି ବି. ଦାସ ନିଜେ ଉଠି ଦରଜା ଖୋଲିଲେ । ଆମକୁ ଦେଖି ସ୍ତମ୍ଭିତ ହୋଇଗଲେ । ଆମ ଉଦ୍ଦେଶ୍ୟ ବୁଝି ଜାଣି ଗଲେ କି ବିପଦ ବରଣ କରୁଛନ୍ତି । ସ୍ୱାମୀଜୀ ମଧ୍ୟ

ଥାଆନ୍ତି । ଆମକୁ ନେଇ ଭିତର ଆଡ଼କୁ ଥିବା ଏକ ଗୁଳ କୋଠରିରେ ରଖାଇ-ଦେଲେ । ଦିନ ହୋଇଗଲେ ଆମେ ବି ଧରା ହୋଇଯିବୁ ଏବଂ ତାହା ସଙ୍ଗେ ଏ ଦିହେଁ ଗିରଫ ହୋଇଯିବେ ଭାବି ଯେତେଶୀଘ୍ର ଆମେ ସେ ସ୍ଥାନ ଛାଡ଼ିବାର ବ୍ୟବସ୍ଥା କଲୁ । ଭୋର ନ ହେଉଣୁ ମାଳତୀ ଦେବୀ ଛାଡ଼ିଲେ ଏବଂ ଟିକିଏ ପରେ ମୁଁ ଗଲି । ମାତ୍ର ଯିବା ଆଗରୁ ବି. ଦାସ ସବୁ ବ୍ୟବସ୍ଥା କରିଦେଲେ । ଆମ ଚିଠି ନେଇ ଲୋକ କଟକ ଗଲେ, ସେଠି ଆମର ରହିବା ଏବଂ ଅନ୍ୟାନ୍ୟ ବ୍ୟବସ୍ଥା ନିମନ୍ତେ । ବି. ଦାସ ଅସୁସ୍ଥ ଥାଆନ୍ତି; ତଥାପି ଏତିକି ଆମ ପାଇଁ-ଦେଶ ପାଇଁ- କରିବାକୁ କୁଣ୍ଠାବୋଧ କରି ନ ଥିଲେ ।

ତାଙ୍କର ଏପରି ନିର୍ଭୀକ ଭାବର ବହୁ ପରିଚୟ ଅଛି । ଏକ ନିର୍ଭୀକ ସ୍ୱାଧୀନଚେତା କେନ୍ଦ୍ର ବ୍ୟବସ୍ଥାପକ ହିସାବରେ ତାଙ୍କର ଖ୍ୟାତି ସୁଦୂରପ୍ରସାରୀ ଥିଲା । ଅବଶ୍ୟ ସେ କଂଗ୍ରେସର ନିର୍ବାଚନ-ବର୍ଜନ ନୀତିକୁ ପସନ୍ଦ ନ କରି ସ୍ୱାଧୀନ ଭାବରେ କେନ୍ଦ୍ର ଆସେମ୍ବ୍ଲିକୁ ନିର୍ବାଚିତ ହୋଇଥିଲେ । କିନ୍ତୁ ସେ ଓ କେ. ସି. ନିୟୋଗୀ ଘୋର ଦମନ ଦେଶରେ ଚାଲୁଥିଲା ବେଳେ ଯେପରି ବ୍ରିଟିଶ ସରକାରର ସମ୍ମୁଖୀନ ହୋଇଥିଲେ, ତାହା ତାଙ୍କ ଜୀବନର ଉଜ୍ଜ୍ୱଳ ବର୍ତ୍ତିକା ହୋଇ ରହିବ । ଗାନ୍ଧୀଜୀଙ୍କ ଅନଶନ ବେଳେ ହରିଜନ ମନ୍ଦିର ପ୍ରବେଶ ଆଇନ କେନ୍ଦ୍ର ଆସେମ୍ବ୍ଲିରେ ପାସ୍ କରାଇଥିବା ନିମନ୍ତେ ରାଜଗୋପାଳାଚାରୀ ଯେଉଁ ଉଦ୍ୟମ କରିଥିଲେ, ତହିଁରେ ପ୍ରଧାନ ସହାୟକ ଥିଲେ ବି. ଦାସ । ସେ ଓ ନିୟୋଗୀ ବିଲ୍ ସପକ୍ଷରେ ବଳିଷ୍ଠ ଯୁକ୍ତି ବାଢ଼ିଥିଲେ ଏବଂ ବ୍ରିଟିଶ ସରକାର ତେଣୁ ବଡ଼ ବିରକ୍ତି ପ୍ରଦର୍ଶନ କରିଥିଲେ । କିନ୍ତୁ ସ୍ୱାଧୀନ ମତ ପ୍ରକାଶରେ ଏମାନେ ଦୃଢ଼ସଂକଳ୍ପ ହୋଇ ରହିଥିଲେ । ମହାତ୍ମା ଗାନ୍ଧୀ ଏଥିଯୋଗୁଁ ବି. ଦାସଙ୍କ ପ୍ରତି ସହାନୁଭୂତି ସଂପନ୍ନ ଥିଲେ । ସେ ସେତେବେଳକୁ କଂଗ୍ରେସରେ ନ ଥିଲେ କିମ୍ବା କଂଗ୍ରେସ ଆନ୍ଦୋଳନରେ ତାଙ୍କର ଯୋଗଦାନର କୌଣସି ସମ୍ଭାବନା ନ ଥିଲା । କିନ୍ତୁ ଓଡ଼ିଶା କଥା ବିଚାରକୁ ନେଲାବେଳକୁ ବି. ଦାସଙ୍କ କଥା ମହାତ୍ମା ଗାନ୍ଧୀଙ୍କ ମନକୁ ପ୍ରଥମେ ଆସୁଥିଲା ।

ମୁଁ, ଯେତେବେଳେ ୧୯୪୨ ମସିହା ମେ-ଜୁନ ମାସରେ ଜାପାନୀ ଆକ୍ରମଣ କଲେ ଆମେ ଓଡ଼ିଶାର କଂଗ୍ରେସ ଲୋକେ କିପରି ଆଚରଣ କରିବୁ— ଏହି ପରାମର୍ଶ ନେବା ନିମନ୍ତେ ସେବାଗ୍ରାମରେ ମହାତ୍ମା ଗାନ୍ଧୀଙ୍କ ପାଖରେ

ପନ୍ଥଅଞ୍ଚଳି ଏବଂ ଓଡ଼ିଶାର ସ୍ଥିତି ସମ୍ବନ୍ଧରେ ବିବରଣୀ ଦେଲି, ସେ ମତେ ପରାମର୍ଶ ଦେବା ଆଗରୁ ପ୍ରଥମେ ପଚାରିଲେ—ବି. ଦାସ କେଉଁଠି ? ଗୋପବନ୍ଧୁ ଚୌଧୁରୀ ଏପରି ସବୁ ଦ୍ରୁତ ପରିବର୍ତ୍ତନ ବେଳେ କ'ଣ ବାଡ଼ିରେ ବସି ରହିଛନ୍ତି ? ସେ ବୋଧହୁଏ ବି. ଦାସଙ୍କୁ ଲୋଡୁଥିଲେ କୌଣସି ଆକାରରେ ତାଙ୍କୁ ଉପଯୋଗ କରିବା ନିମନ୍ତେ । କଂଗ୍ରେସ ବାରଣକୁ ଅବଜ୍ଞା କରି ସ୍ୱାଧୀନ ଭାବରେ କେନ୍ଦ୍ର ଆସେମ୍ବ୍ଲିରେ ତାଙ୍କର ସ୍ୱାଧୀନ ଜାତୀୟବାଦୀ କାର୍ଯ୍ୟ ଯୋଗୁଁ ସେ ଅତି ଉଚ୍ଚ ରାଜନୀତିଜ୍ଞ ଭାବରେ ସ୍ଥାନ ପାଉଥିଲେ । ସେଥିପାଇଁ ୧୯୫୨ ସ୍ୱାଧୀନୋତ୍ତର ପାର୍ଲିମେଣ୍ଟ ନିର୍ବାଚନରେ କଂଗ୍ରେସ ଟିକଟ ପାଇବାରେ ତାଙ୍କର କିଛି ଅସୁବିଧା ହୋଇ ନ ଥିଲା । ତାଙ୍କୁ କୁହା ହେଉଥିଲା ଫାଦର ଅଫ୍ ପାର୍ଲିମେଣ୍ଟ । ପ୍ରଥମ ପ୍ରାରମ୍ଭିକ ଅଧିବେଶନରେ ସେ ହୋଇଥିଲେ ଅଧ୍ୟକ୍ଷ । କେଉଁ ଓଡ଼ିଆ ପୁଅକୁ ଏପରି ଗୌରବ, ସମ୍ମାନ ମିଳିଛି ।

ଦୀର୍ଘକାଳ ଭିତରେ ତାଙ୍କର ପାର୍ଲାମେଣ୍ଟାରୀ କୃତିତ୍ୱ ସମ୍ବନ୍ଧରେ ଗବେଷଣା କରଯାଇ ପୁସ୍ତକ ପ୍ରକାଶିତ ହେଲେ ଆଧୁନିକ ବ୍ୟବସ୍ଥାପକମାନଙ୍କ ପାଇଁ ବଡ଼ ଶିକ୍ଷାପ୍ରଦ ହୁଅନ୍ତା । ପବ୍ଲିକ ଏକାଉଣ୍ଟସ୍ କମିଟୀର ଚେୟାରମ୍ୟାନ ଭାବରେ ସେ ପଣ୍ଡିତ ଜବାହରଲାଲଙ୍କ ଅତି ନିକଟତମ ବନ୍ଧୁ କୃଷ୍ଣ ମେନନଙ୍କ ସଂକ୍ରାନ୍ତରେ ଯେଉଁ ମନ୍ତବ୍ୟ ଦେଇଥିଲେ ଏବଂ ନାନା ପ୍ରଭାବ ସତ୍ତ୍ୱେ ତହିଁର ସଂଶୋଧନ କରିବା ନିମନ୍ତେ ଯେ ପ୍ରସ୍ତୁତ ହେଲେ ନାହିଁ (ସରକାରୀ ଦଳର ସଦସ୍ୟ ହୋଇ ସୁଦ୍ଧା) ଏପରି ସ୍ୱାଧୀନ ଓ ନିର୍ଭୀକ ଭାବ ଓ ଟାଣପଣ କେତେ ଜଣ ଭାରତୀୟଙ୍କର ଥିଲା ବା ଅଛି ?

୧୯୫୮ରେ ଯେ ତାଙ୍କୁ ରାଜ୍ୟସଭା ଲାଗି କଂଗ୍ରେସ ଦଳ ତରଫରୁ ମନୋନୟନ ମିଳିଲା ନାହିଁ, ତହିଁରେ ସେ ଅତ୍ୟନ୍ତ ମର୍ମାହତ ହୋଇ ପଡ଼ିଥିଲେ । ଏପରି ଏକ ଉଚ୍ଚମନା ପୁରୁଷ ବ୍ୟଥିତ ହୋଇ ଆଖି ଛଳଛଳ କରି ଦିଲ୍ଲୀରେ ତାଙ୍କରି ଘରେ ୫ନମ୍ବର ଫିରୋଜ ଶାହା ରୋଡ୍‌ରେ ମତେ ଯାହା କହିଥିଲେ, ତାହା ସ୍ମରଣ କରି ଏବେ ବି ମୋ ପ୍ରାଣରେ କୋହ ଉଠୁଛି । ତାଙ୍କ ପ୍ରତି ଏହା ଥିଲା ଏକ ପ୍ରତାରଣା । ଏହି ଘଟଣାର ଅଳ୍ପଦିନ ପରେ ତାଙ୍କର ମୃତ୍ୟୁ ଘଟିଲା ।

ପାର୍ଲ୍ୟାମେଣ୍ଟରେ ତାଙ୍କର ଖ୍ୟାତି ଓ ତାଙ୍କ ପ୍ରତି ଲୋକଙ୍କର ଆଦର ସମ୍ମାନ କେବଳ ପାର୍ଲ୍ୟାମେଣ୍ଟ କାର୍ଯ୍ୟ ଯୋଗୁଁ ନୁହେଁ, ତାଙ୍କର ସାମାଜିକତା ଓ ମୂଲ୍ୟବୋଧ ନିମନ୍ତେ ବିଶେଷ ଭବରେ ସେ ଆଦୃତ ହେଉଥିଲେ । ବ୍ରିଟିଶ କାଇଦା ଅନୁସାରେ ସେ ଥିଲେ ମିଷ୍ଟାଳାପୀ ଏବଂ ଲବିଂରେ ଥିଲେ ସିଦ୍ଧହସ୍ତ । ତେଣୁ ଉଚ୍ଚ ସରକାରୀ ଓ ବେସରକାରୀ ମହଲରେ ସେ ଥିଲେ ଅତ୍ୟନ୍ତ ଲୋକପ୍ରିୟ । ତାଙ୍କର ଏହି ସହୃଦୟତା ଓ ଆତ୍ମୀୟତା ନିମନ୍ତେ ସମସ୍ତଙ୍କର ପ୍ରୀତିଭଜନ ହୋଇ ରହିଥିଲେ ଏବଂ ତାଙ୍କର ମୃତ୍ୟୁପରେ ଲୋକେ ତାଙ୍କୁ ବହୁ-ଦିନ ଝୁରିଲେ ।

ଦିଲ୍ଲୀରେ ଆଖପାଖ ଘରେ ଫିରୋଜ ଶାହା ରୋଡ୍‌ରେ ରହୁଥିବାରୁ ଆମ ଭିତରେ ଐକାନ୍ତିକତା ଶ୍ରଦ୍ଧା ବୃଦ୍ଧି ପାଇଲା ଏବଂ ମୁଁ ତାଙ୍କୁ ଖୁବ୍ ସମ୍ମାନ ଓ ଭକ୍ତି କରୁଥିଲି । ସେ ସ୍ନେହ କେବେ ଭୁଲିପାରିବି ନାହିଁ । ଗୋଟିଏ କଥା ଉଲ୍ଲେଖ ନ କରି ରହି ପାରୁନାହିଁ । ଶେଷବେଳକୁ ତାଙ୍କର ଗାଉଟ ରୋଗ ହେବାରୁ ବାଡ଼ି ଧରି ବଡ଼ ଧୀରେ ଚାଲି ପାରୁଥିଲେ । ୧୯୫୬ ଜାନୁୟାରୀରେ ଡକ୍ଟର ସେନ୍‌ଙ୍କ ନର୍ସିଂ ହୋମ୍‌ର ଦୋତାଲାରେ ହେଲା ମୋର ପେଟ ଅପରେ-ସନ୍ । ଲିଫ୍‌ଟ୍ ନ ଥାଏ । ହଠାତ୍ ଦିନେ ସକାଳେ ଛୋଟେଇ ଛୋଟେଇ ଉପରକୁ ଚଢ଼ିଯାଇ ମୋ ବେଡ୍ ପାଖରେ ହାଜର ସାଙ୍ଗରେ କିଛି ଫଳଧରି । ଡକ୍ଟର ସେନ୍ ଚକିତ ହୋଇଗଲେ । ଜାଣିଥିଲେ ହୁଇଲ୍ ଚେୟାରରେ ଅଣାଇ-ଥାନ୍ତି କହି ଦୁଃଖ କଲେ । ଆପଣ ଏପରି ବିପଦ ନେବେ ନାହିଁ ବୋଲି ତାଙ୍କୁ କହିଲେ । ସେ କହିଲେ ନ ଦେଖିଥିଲେ ମନ ଶାନ୍ତି ହୁଅନ୍ତା ନାହିଁ ବୋଲି ଆସିଲି । ଏପରି ସ୍ନେହ ମୁଁ ମୋର ଆତ୍ମୀୟମାନଙ୍କଠାରୁ ବି ପାଇନାହିଁ ।

—୦—

# ଗୋଟିଏ ଝିଅ

**ଶ୍ରୀ ହରିହର ମହାପାତ୍ର**

ସ୍ୱାମୀଜୀଙ୍କ ସହିତ ପ୍ରଥମ ସାକ୍ଷାତ ଓ ଆଳାପ ପୁରୀରୁ ଆସୁଥିବା ସକାଳ ପାସେଞ୍ଜର ଟ୍ରେନର ଇଣ୍ଟର କ୍ଲାସ କମ୍ପାଟମେଣ୍ଟରେ, ୧୯୨୩ ମସିହାରେ । ମୁଁ ଆସୁଥିଲି ଗାଁରୁ ସାକ୍ଷୀଗୋପାଳ ଷ୍ଟେସନ୍‌ରୁ ରେଭେନ୍‌ସା କଲେଜ ହଷ୍ଟେଲକୁ । ସେତେବେଳେ ମୁଁ ଥିଲି ବି:ଏ: ପ୍ରଥମ ବର୍ଷର ଛାତ୍ର । ସ୍ୱାମୀଜୀ ଉଠିଲେ ଭୁବନେଶ୍ୱରରୁ । ମୋ ସାଙ୍ଗରେ ଥିଲା ଗୋଟିଏ ବେତ ପେଡ଼ି । ତାହା ସ୍ୱାମୀଜୀଙ୍କ ଦୃଷ୍ଟି ଆକର୍ଷଣ କଲା । ମୋ ପରିଚୟ ପଚାରି, ଅତି ସହୃଦୟତା ପ୍ରକାଶ କଲେ ।

ତା'ର ଅଳ୍ପଦିନପରେ କଟକ ମ୍ୟୁନିସପାଲଟିର ନିର୍ବାଚନ ଆସିଲା । ଆମେ ହଷ୍ଟେଲରେ ରହୁଥିବା ସାବାଳକ ପିଲାଏ ସେଥିରେ ଭୋଟର ତାଲିକାଭୁକ୍ତ ହେବାପାଇଁ ଦାବି କଲୁ । ଘଟନାକ୍ରମେ ମୁଁ ଆଗକୁ ବାହାରିଲି । ରାମଶଙ୍କର ରାୟ (ଓକିଲ, ନାଟ୍ୟକାର) ମ୍ୟୁନିସ୍‌ପାଲଟିର ଚେୟାରମ୍ୟାନ ଥାଆନ୍ତି । ତାଙ୍କର ଚୌଧୁରୀବଜାର ଦ୍ୱିତଳ କୋଠାରେ ହଷ୍ଟେଲ ପିଲାଙ୍କର ଦସ୍ତଖତ ସମ୍ବଳିତ ଦରଖାସ୍ତ ନେଇ ମୁଁ ହାଜର ହେଲାବେଳେ, ରାମଶଙ୍କର ବାବୁ ତାଙ୍କ ମହକିଲ, ମୋହରୀରଙ୍କ ଗହଣରେ ବସିଥାନ୍ତି । ମ୍ୟୁନିସପାଲଟିର କେତେକ କର୍ମଚାରୀ ମଧ୍ୟ ଥାଆନ୍ତି । ମୁଁ ପିଲାଟାଏ, ମୋ ପ୍ରତି ଭ୍ରୂକ୍ଷେପ କଲେ ନାହିଁ । କିଛି ସମୟ ଅପମାନରେ ଠିଆ ହୋଇ ରହି ମୋ ନେତାପଣିଆ ପ୍ରାୟ ଭାଙ୍ଗି ପଡ଼ିବା ଉପରେ । ବୟସ୍କ ମୋହରୀର ଜଣେ ମୋ ହାତରେ ଲମ୍ବା କାଗଜ ଦେଖି ଭାବିଲେ ବୋଧହୁଏ କୌଣସି ମକଦ୍ଦମା ପାଇଁ ଆସିଛି । ମୋ ହାତରୁ କାଗଜ ନେଇ ରାମଶଙ୍କର ବାବୁଙ୍କ ଡେସ୍କ ଉପରେ ରଖିଲେ । ସେ ରୋଷ ନେତ୍ରରେ ମତେ ପଚାରିଲେ, କଥା କ'ଣ ? ମୁଁ ଆମ ଭୋଟର ଦାବି କଥା କହିବାରୁ ନାପସନ୍ଦ ଢଙ୍ଗରେ ଦରଖାସ୍ତଟି ଦେଖିଲେ । ସବୁପିଲାଙ୍କ ପକ୍ଷରୁ ଦରଖାସ୍ତ ଦାଖଲ କରିବାପାଇଁ ମୋର ଅଧିକାର କେଉଁଠୁ ଆସିଲା ବୋଲି ପଚାରନ୍ତେ, ମୁଁ ଅଥ ମଥ ହୋଇଗଲି । ମୋର ଅସହାୟ ଅବସ୍ଥା

ଦେଖି ତାଙ୍କର ବୋଧହୁଏ ଦୟାହେଲା । କହିଲେ, Power of Attorney ଆଣ, ତେବେ ଯାଇ ତମ ଦରଖାସ୍ତ ବିଚାର ହେବ । Power of Attorney କ'ଣ ମୁଁ ଜାଣିନଥାଏ । କୌଣସି ଓକିଲଙ୍କୁ ମଧ୍ୟ ଜାଣିନଥାଏ । ମନେ ପଡ଼ିଲେ ସ୍ୱାମୀଜୀ । ଗଲି ତାଙ୍କ ଡଗରପଡ଼ା ଘରକୁ । ବାହାର ବାରଣ୍ଡାରେ ତେଲ ମାଲିସ ହେଉଥାନ୍ତି ଗାଧୋଇବା ପାଇଁ । ପଥର କୁଣ୍ଡରେ ପାଣି ଭରିଥାଏ । ପାଖରେ ଚାକର । ଦ୍ୱିଧା ଓ ସଙ୍କୋଚରେ ତାଙ୍କୁ ମୋ ଦୟନୀୟ ଅବସ୍ଥା ଜଣାଇଲି । ଟ୍ରେନରେ ଯେଉଁ ସହୃଦୟତାର ପରିଚୟ ପାଇଥିଲି, ତାହାରି ଉପରେ ନିର୍ଭର କରିବା (ମୋର) ବ୍ୟର୍ଥ ହେଲାନାହିଁ । ରାମଶଙ୍କର ବାବୁଙ୍କ ଉପହାସ ଓ ଦୂର ଦୂର ଭାବ ଅଧିକ ଜଣାପଡ଼ିଲା, ସ୍ୱାମୀଜୀଙ୍କ ଅକୁଣ୍ଠ ସହାୟତା ପ୍ରକାଶରେ । ମୋହରୀରକୁ ଡାକି, ଷ୍ଟାମ୍ପ ପେପର କିଣି, ଟାଇପ୍ କରାଇ Power of Attorney ମତେ ଦେବାର ବରାଦ କରିଦେଲେ ତତ୍‌କ୍ଷଣାତ୍ । ମୋର ଦମ୍ଭ କେବଳ ବଢ଼ିଲା ନାହିଁ, କିଛିଟା ବିଜୟ ଉଲ୍ଲାସରେ ଯାଇ ଭେଟିଲି ପୁଣି ରାମଶଙ୍କର ବାବୁଙ୍କୁ । ସେ ଅଗତ୍ୟା ଭୋଟର ତାଲିକାରେ ଆମ ନାମ ସବୁ ଯୋଡ଼ିବାକୁ ଆଦେଶ ଦେଲେ । ରେଭନ୍‌ସା କଲେଜ ଇଷ୍ଟ ହଷ୍ଟେଲରେ ସେ ଦିନ ଗଡ଼ଜୟ । ସ୍ୱାମୀଜୀଙ୍କ ସହୃଦୟତା ସମସ୍ତଙ୍କୁ ଜଣାଇଲି । ସେହିଦିନୁ ମୁଁ ହେଲି ସ୍ୱାମୀଜୀଙ୍କର ଜଣେ ଅନୁରକ୍ତ ।

ଓକିଲାତି କରିବାକୁ କଟକ ଆସିଲି ୧୯୩୧ ସେପ୍‌ଟେମ୍ବର ମାସରେ । ସ୍ୱାମୀଜୀଙ୍କର ପ୍ରତିଷ୍ଠା କଚେରିରେ, କଚେରିବାହାରେ, ଅତି ଉଚ୍ଚରେ । ମୂଳରୁ ତାଙ୍କ ସଙ୍ଗେ ସାମିଲ ହେଲି ସାଧାରଣ କ୍ଷେତ୍ରରେ । ଓଡ଼ିଶା ରିଲିଫ୍ କମିଟୀ, ଉତ୍କଳ ସମ୍ମିଳନୀ, ଜୁଡୁମା ଆନ୍ଦୋଳନ, ଦେଶମିଶ୍ରଣ, ସ୍ୱତନ୍ତ୍ର ପ୍ରଦେଶ, ଓଲଡ୍ ବୟେଜ ଆସୋସିଏସନ୍, ଓଡ଼ିଆ ପିପ୍‌ଲସ୍ ଆସୋସିଏସନ୍, ପୁଅର୍ କଟେଜ ଇଣ୍ଡଷ୍ଟ୍ରିଜ୍ ପ୍ରଭୃତି ନାନା କ୍ଷେତ୍ରରେ ସ୍ୱାମୀଜୀଙ୍କ ସଙ୍ଗେ କାର୍ଯ୍ୟ କରିବାର ସୁଯୋଗ ଆସିଥିଲା । ସର୍ବତ୍ର ଓ ସର୍ବଦା ତାଂକର ଦରଦୀ ପ୍ରାଣର ସ୍ପର୍ଶ ମିଳୁଥିଲା । ବିପନ୍ନୀକର ଦୁଃଖର କେତୋଟି କାହାଣୀ ତାଂକଠାରୁ ଶୁଣିଲା ବେଳେ ଅନ୍ତର ମନ୍ଥିତ ହୋଇ ଯାଉଥିଲା । ନିଜର ଦୁଃଖକୁ ସେ ସବୁବେଳେ ଘୋଡ଼ାଇ ରଖୁଥିଲେ, ଅନ୍ୟମାନଂକ ଦୁଃଖ ମୋଚନର ପ୍ରଚେଷ୍ଟାରେ । ମୁକ୍ତ ହସ୍ତରେ ରିକ୍ତହସ୍ତ ହେଉଥିଲେ ବହୁ ସମୟରେ । କିନ୍ତୁ ଭରସା ଥିଲା ସବୁବେଳେ

ଈଶ୍ୱରଂକ ଉପରେ । ଜନ ଗହଳିରୁ ସେ ଯେତେବେଳେ ଫେରୁଥିଲେ ତାଂକ ନିଜ କ୍ଷୁଦ୍ର ପ୍ରକୋଷ୍ଠର ନୁଆଁଣିଆ (ଲୁଆଣିଆ) ଖଟଟି ଉପରକୁ, ଅତୀତର କେତୋଟି ସ୍ମୃତି ତାଂକ ନିର୍ଜନତାର ଚିରସହଚର ହୋଇ ରହୁଥିଲା । ସେଥିରେ ସେ ମହୀୟାନ ହୋଇ ଉଠୁଥିଲେ । ସେ ଦେଇଯାଇଛନ୍ତି ସ୍ନେହ, ସାହାଯ୍ୟ ସମସ୍ତଙ୍କୁ, ପାଇଛନ୍ତି କ୍ୱଚିତ୍ ବା କିଞ୍ଚିତ୍ ।

୨୫ । ୪ । ୮୫

–0–

# ଆମ ରାଜ୍ୟର ଦୁଇ ବିଶିଷ୍ଟ ଯମଜ ନେତା

ଶ୍ରୀ ଶ୍ୟାମସୁନ୍ଦର ମିଶ୍ର

ସ୍ୱର୍ଗତ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଏବଂ ତାଙ୍କର ଯମଜ ସ୍ୱର୍ଗତ ଭୁବନାନନ୍ଦ ଦାସ ଉଭୟେ ଓଡ଼ିଶାର ମୁଖୋଜ୍ଜ୍ୱଳକାରୀ ମାନନୀୟ ନେତା । ସେ ଦୁହେଁ ଯେତେ ଦିନ ଯାଏ ଜୀବିତ ଥିଲେ ତାଙ୍କ ଭଳି ଅତିଥି ପରାୟଣ ଲୋକ କଟକ ସହରରେ ବିଶେଷ କେହି ନ ଥିଲେ । ଭାରତର ବିଶିଷ୍ଟ ଜନସେବୀ, ବିଦଗ୍ଧ, ନେତୃସ୍ଥାନୀୟ ଲୋକେ କଟକ ଆସିଲାବେଳେ ସାଧାରଣତଃ ଏହି ଦୁଇ ଭାଇଙ୍କର ଅତିଥି ହୋଇ ରହିଥିଲେ । ଲକ୍ଷ୍ୟ କରିବାର କଥା ଯେ ଏହି ଦୁଇ ଯମଜ ଭାଇଙ୍କ ଭିତରେ ଯେଉଁ ସ୍ନେହ ଓ ବନ୍ଧୁଭାବ ଆଜୀବନ ରହିଥିଲା ତାହା ସମସ୍ତଙ୍କୁ ଚମତ୍କୃତ କରିଥିଲା । ସେ ଦୁହିଁଙ୍କର ସାନ ଭାଇ ଭାବରେ ସେମାନଙ୍କ ସମ୍ପର୍କରେ ଆସିବାର ବହୁ ସୁବିଧା ମୁଁ ପାଇଛି । ସେ ସମସ୍ତ କଥା ଏଠାରେ ଲିପିବଦ୍ଧ କଲେ ଗୋଟିଏ ଗ୍ରନ୍ଥ ହେବ; ତଥାପି ଯେତେଦୂର ସମ୍ଭବ ସଂକ୍ଷିପ୍ତ ଭାବରେ ମୋର ଅନୁଭୂତିର କିଛି ଅଂଶ ଏଠାରେ ବର୍ଣ୍ଣନା କରୁଛି ।

୧୯୨୮ ମସିହାରେ ରେଭେନ୍ସା କଲେଜର ଛାତ୍ର ଥିଲାବେଳେ ସ୍ୱର୍ଗତ ଅଧ୍ୟାପକ ନାରାୟଣ ମିଶ୍ରଙ୍କ ନେତୃତ୍ୱରେ ମୁଁ ଏବଂ ମୋର ସମସାମୟିକ ପ୍ରାୟ ୨୦ଜଣ ଛାତ୍ର ବନ୍ଧୁ କଲେଜ ପକ୍ଷରୁ ଉତ୍ତର ଭାରତ ଭ୍ରମଣରେ ଯାଇ-ଥିଲୁ । ଉତ୍ତର ଭାରତର ବହୁ ସ୍ଥାନ ଯଥା :— ଆହ୍ଲାବାଦ, ଲକ୍ଷ୍ନୌ, ମଥୁରା, ବୃନ୍ଦାବନ ଏପରି ବହୁ ସହର ଦେଖି ଶେଷରେ ପହଞ୍ଚିଲୁ ଦିଲ୍ଲୀ ସହରରେ । ଦିଲ୍ଲୀ ରେଲୱେ ଷ୍ଟେସନରେ ପହଞ୍ଚିଲା ମାତ୍ରେ ସ୍ୱର୍ଗତ ବି : ଦାସଙ୍କର କନିଷ୍ଠ ଶାଳକ ସ୍ୱର୍ଗତ ଅଭିମନ୍ୟୁ ପଟ୍ଟନାୟକ ଦିଲ୍ଲୀ ରେଲୱେ ଷ୍ଟେସନରେ ଅପେକ୍ଷା କରିଥିଲେ, ଆମ ସମସ୍ତଙ୍କୁ ବି: ଦାସଙ୍କ ବାସଭବନକୁ ନେବା ପାଇଁ । ବି: ଦାସ ସେତେବେଳେ କେନ୍ଦ୍ର ଆସେମ୍ବ୍ଲିର ସଭ୍ୟ ଏବଂ ସେ ନୂଆ ଦିଲ୍ଲୀରେ

ରହୁଥିଲେ । କିନ୍ତୁ ଆମେ ଏତେଗୁଡ଼ିଏ ଛାତ୍ର ଏକା ସାଙ୍ଗରେ ଯାଇଥିବା ହେତୁ ଭୁବନାନନ୍ଦ ବାବୁଙ୍କୁ କୌଣସି ରକମ ଅସୁବିଧାରେ ପକାଇବାକୁ ଚାହିଁଲୁ ନାହିଁ । ସେତେବେଳେ ଅତି ଶସ୍ତା ସମୟ, ଆମେ ରେଳଷ୍ଟେସନ ପାଖ ଏକ ହୋଟେଲରେ ରାତିଟି କଟାଇଲୁ । ବି.ଦାସଙ୍କ ଆତ୍ମୀୟ ଅଭିମନ୍ୟୁ ବାବୁଙ୍କୁ ଆମର ଅନୁରୋଧ ଥିଲା ଯେ ଆମେ ସକାଳ ଓଳା ଖିଆପିଆକରି କେନ୍ଦ୍ର ଆସେମ୍ବ୍ଲି ଦେଖିବାକୁ ଯିବୁ । ଆମ ଲାଗି ୨୦ଟି ଦର୍ଶକ ଟିକେଟ ବି.ଦାସଙ୍କୁ କହି ଯୋଗାଡ଼ କରିଥିବେ । ଆମର କାର୍ଯ୍ୟ ନିର୍ଘଣ୍ଟ ମୁତାବକ ଆମେ ଠିକ୍ ୧୨ଟା ବେଳେ କେନ୍ଦ୍ର ଆସେମ୍ବ୍ଲି ଭବନରେ ପହଞ୍ଚିଲୁ । ଅଭିମନ୍ୟୁ ବାବୁ ସେଠାରେ ଆମକୁ ଅପେକ୍ଷା କରିଥିଲେ ଏବଂ ଆମ୍ଭମାନଙ୍କ ପାଇଁ ୨୦ଟି ଦର୍ଶକ ଟିକେଟର ବ୍ୟବସ୍ଥା କରାଇଥିଲେ । କେନ୍ଦ୍ର ଆସେମ୍ବ୍ଲିରେ ସେତେବେଳେ ଅପୂର୍ବ ଦୃଶ୍ୟ । ସ୍ୱରାଜ୍ୟ ପାର୍ଟିର ନେତା ପଣ୍ଡିତ ମୋତିଲାଲ ନେହରୁ, ନ୍ୟାସନାଲିଷ୍ଟ ପାର୍ଟିର ନେତା ପଣ୍ଡିତ ମଦନ ମୋହନ ମାଲବୀୟ, ଇଣ୍ଡି-ପେଣ୍ଡେଣ୍ଟ୍ ପାର୍ଟିର ନେତା ଏମ.ଏ. ଜିନ୍ନା ଏହିଭଳି ଭାରତ ବିଖ୍ୟାତ ରାଜ-ନୀତିଜ୍ଞମାନଙ୍କର ଯୁକ୍ତିତର୍କରେ କେନ୍ଦ୍ର ଆସେମ୍ବ୍ଲି ଗୃହ ମୁଖର । ଏହା ପ୍ରକୃତରେ ଆମ୍ଭମାନଙ୍କ ଭଳି ଅଳ୍ପ ବୟସ୍କ ଛାତ୍ରମାନଙ୍କ ପକ୍ଷରେ ସବୁଦିନ ପାଇଁ ମନେ ରହିବା ଭଳି ଏକ ସୁବର୍ଣ୍ଣ ସୁଯୋଗ ଥିଲା । ଅଳ୍ପ ସମୟପରେ ଶ୍ରୀଯୁକ୍ତ ବି. ଦାସ ଆମର ଅଧ୍ୟାପକ ନାରାୟଣ ମିଶ୍ରଙ୍କ ସହିତ କଥାଭାଷା କରି ଆମେ ତାଙ୍କ ବାସଭବନରେ ରହିବା ପାଇଁ ରାଜି ହୋଇ ନ ଥିବା ହେତୁ ଗଭୀର କ୍ଷୋଭ ପ୍ରକାଶ କରିଥିଲେ ଏବଂ ଆମ୍ଭମାନଙ୍କ ପାଇଁ କେନ୍ଦ୍ର ଆସେମ୍ବ୍ଲି ହତା ଭିତରେ ଏକ ଟି ପାର୍ଟିର ଆୟୋଜନ କରିଥିଲେ । ଏଥିରେ ସ୍ୱନାମଧନ୍ୟ ସ୍ୱର୍ଗୀୟ ପଣ୍ଡିତ ନୀଳକଣ୍ଠ ଦାସ ମଧ୍ୟ ଉପସ୍ଥିତ ଥିଲେ । ପଣ୍ଡିତ ମହାଶୟ କେନ୍ଦ୍ର ଆସେମ୍ବ୍ଲି ଚାରିପଟେ ଥିବା ବିଭିନ୍ନ ଐତିହାସିକ ମୂର୍ତ୍ତିପ୍ରତି ଆମ୍ଭମାନଙ୍କର ଦୃଷ୍ଟି ଆକର୍ଷଣ କରି ସେଗୁଡ଼ିକ ସମ୍ବନ୍ଧରେ ଆମ୍ଭମାନଙ୍କୁ ବିଶଦ ବିବରଣୀ ଦେଇଥିଲେ । ଏହା ଥିଲା ସ୍ୱର୍ଗୀୟ ଭୁବନାନନ୍ଦ ଦାସଙ୍କ ସହିତ ମୋର ପ୍ରଥମ ସାକ୍ଷାତ । ତା' ପରେ ଅନେକ ଦିନ ବିତିଗଲା । ମୁଁ ହିନ୍ଦ୍ ସେବକ ସଂଘର ଜଣେ ଆଜୀବନ ସଭ୍ୟ ଭାବରେ ୧୯୩୭ ମସିହାରେ କେନ୍ଦ୍ର ଆସେମ୍ବ୍ଲିର ସଭ୍ୟ ଏବଂ ଆମ ଅନୁଷ୍ଠାନର ଉପସଭାପତି ସ୍ୱର୍ଗୀୟ ଏନ. ଏମ. ଯୋଶୀଙ୍କର ସହକାରୀ ଭାବରେ ଦିଲ୍ଲୀରେ ରହୁଥିଲି । ଭୁବନାନନ୍ଦ ବାବୁଙ୍କ ଘର ଏନ୍.

ଏମ୍. ଯୋଶୀଙ୍କ ଘର ପାଖରେ ଥିଲା, ଏବଂ ପ୍ରାୟ ଅଧିକାଂଶ ସମୟ ଭୁବନାନନ୍ଦବାବୁ ଏନ୍. ଏମ୍. ଯୋଶୀଙ୍କ ଘରେ ପହଞ୍ଚି କହନ୍ତି ଯେ ତୁମ୍ଭେମାନେ ତ 'ଘାସ ଖାଦକ' (ନିରମିଷ-ଭୋଜୀମାନଙ୍କୁ ସେ ସେହି ଆଖ୍ୟାରେ ଅଭିହିତ କରୁଥିଲେ), ଶ୍ୟାମସୁନ୍ଦର ତୁମ ଘରର ଶେଷେଇ ସବୁ-ବେଳେ ଖାଇପାରିବ ନାହିଁ । ସେ ଆମିଷାଶୀ, ତେଣୁ ମୁଁ ତାକୁ ସାଙ୍ଗରେ ନେଇ ଯାଉଛି ସେ ମୋ ଘରେ ଖାଇବ । ଦିଲ୍ଲୀରେ ଯେଥର ମୋର ରହଣି ୩ ମାସ ଭିତରୁ ବହୁଦିନ ମୁଁ ତାଙ୍କଘରେ ରଜା ଆଡ଼ମ୍ବରରେ ଖାଇଛି । ସେତେବେଳେ ତାଙ୍କ ସହିତ ଯେଉଁ କଥାଭାଷା ହୁଏ ତାହା ଲେଖିବାପାଇଁ ଏହି କ୍ଷୁଦ୍ର ପ୍ରବନ୍ଧରେ ସ୍ଥାନ କାହିଁ ? ଯେତେଥର ମୁଁ କାର୍ଯ୍ୟ ଉପଲକ୍ଷ୍ୟରେ ଦିଲ୍ଲୀ ଯାଏ ଭୁବନାନନ୍ଦ ବାବୁଙ୍କୁ ମୋର ଭକ୍ତିପୂର୍ଣ୍ଣ ସମ୍ମାନ ଜ୍ଞାପନ କରେ ଏବଂ ତାଙ୍କ-ଠାରୁ ଯେଉଁ ସ୍ନେହ ସମ୍ବର୍ଦ୍ଧନା ପାଏ ତାହା ମୋ ଜୀବନର ଏକ ଅମୂଲ୍ୟ ସମ୍ପଦ । ସ୍ୱର୍ଗୀୟ ଭୁବନାନନ୍ଦ ବାବୁଙ୍କ ବିୟୋଗରେ ଓଡ଼ିଶା ଜଣେ ନିଖିଳ-ଭାରତସ୍ତରୀୟ ନେତାଙ୍କୁ ହରାଇଛି । ଆମର ଭାରତୀୟ ସମ୍ବିଧାନ ଯେତେ-ବେଳେ ଆଲୋଚିତ ହେଉଥିଲା ସେତେବେଳେ ଓଡ଼ିଶାର ବହୁ ବିଶିଷ୍ଟ ଲୋକଙ୍କ ମଧ୍ୟରେ ଭୁବନାନନ୍ଦ ବାବୁ ସମ୍ବିଧାନ ପ୍ରଣୟନ ସଭାର ରାଜସ୍ୱ ତଥା ଅନ୍ୟାନ୍ୟ ବିଭବ ସମ୍ପର୍କୀୟ ଆଲୋଚନାରେ ଅଂଶ ଗ୍ରହଣ କରି ଓଡ଼ିଶାର ମୁଖ ଉଜ୍ଜ୍ୱଳ କରିଥିଲେ । କେବଳ ସେତିକି ନୁହେଁ, ସେ କେନ୍ଦ୍ର ଆସେମ୍ବ୍ଲିର ପ୍ରାଚୀନତମ ସଭ୍ୟ ଭାବରେ ପରିଚିତ ଥିଲେ ଏବଂ ବହୁଦିନ କେନ୍ଦ୍ର ସରକାରଙ୍କ ଆୟବ୍ୟୟ ସମୀକ୍ଷା କମିଟୀର ଚେୟାରମ୍ୟାନ ଥିଲେ ।

ସ୍ୱାମୀ ବିଚିତ୍ରାନନ୍ଦ ଦାସ ଯମଜ ହେଲେ ହେଁ ଭୁବନାନନ୍ଦ ବାବୁଙ୍କର ବଡ଼ ଭାଇ, ଓଡ଼ିଶାର ଆଉନଜୀବୀ ମହଲରେ ଅନେକ ଦିନ ପର୍ଯ୍ୟନ୍ତ ସେ ଜଣେ ବିଶିଷ୍ଟ ନେତା ଭାବରେ ପରିଚିତ ଥିଲେ । ସେ ଥିଲେ କୁଳବୃଦ୍ଧ ସ୍ୱର୍ଗୀୟ ମଧୁସୂଦନ ଦାସଙ୍କର ପଟ୍ଟଶିଷ୍ୟ । ଏକାନ୍ତ ସ୍ଥବିର ହେବା ପର୍ଯ୍ୟନ୍ତ ସେ ପ୍ରତିବର୍ଷ ମିଷ୍ଟର ଦାସଙ୍କ ଶ୍ରାଦ୍ଧ ଦିବସରେ ଗୋରା କବରସ୍ଥ ତାଙ୍କ ସମାଧିପୀଠରେ ଉପସ୍ଥିତ ରହୁଥିଲେ । ପରଜୀବନରେ ସେ ଯେତେବେଳେ କୁଳବୃଦ୍ଧ ଆଖ୍ୟାପାଇ ୮୯ ବର୍ଷରେ ପଦାର୍ପଣ କଲେ, ସେତେବେଳେ କଟକ ତଥା ଓଡ଼ିଶାର ଶିକ୍ଷିତ ସମାଜରେ ସେ ଜଣେ ଅତି ପରିଚିତ ନେତା ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ ।

ଅଳ୍ପ ବୟସରେ ବିପତ୍ନୀକ ହୋଇଥିବା ହେତୁ ତାଙ୍କର ସନ୍ତାନସନ୍ତତି ମଧ୍ୟରେ କେବଳ ଗୋଟିଏ ଝିଅ ଏବଂ ଭୁବନାନନ୍ଦ ବାବୁଙ୍କଠାରୁ ଦତ୍ତ କରି ଆଣିଥିବା ପୁଅ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ । ତାଙ୍କର ପ୍ରକୃତରେ ଥିଲା "ବସୁଧୈବ-କୁଟୁମ୍ବକମ" ନୀତି । ଅତିଥିମାନଙ୍କ ପାଇଁ ତାଙ୍କର ଥିଲା ଅବାରିତ ଦ୍ୱାର । ସେ ଥିଲେ ଅତି ସରଳ ଓ ମିଷ୍ଟଭଷୀ । ସେ ଓଡ଼ିଶା ବ୍ୟବସ୍ଥା ସଭରେ କଟକ ସହରର ନିର୍ବାଚିତ ପ୍ରତିନିଧିଭାବରେ କାମ କରିଥିଲେ ଏବଂ ଓଡ଼ିଶାରେ ପାରଳା ଗଜପତିଙ୍କ ମୁଖ୍ୟମନ୍ତ୍ରିତ୍ୱ ଚାଲିଥିଲା ବେଳେ କେତେଦିନ ପାଇଁ ବିରୋଧୀଦଳର ନେତା ମଧ୍ୟ ଥିଲେ । ସେ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶା ସରକାରଙ୍କ ପ୍ରଥମ ଆଡ୍‌ଭୋକେଟ୍ ଜେନେରଲ ଥିଲେ ଏବଂ ବହୁଦିନ ସେହି ଦାୟିତ୍ୱ ବହନ କରିଥିଲେ । ତାଙ୍କର ଜନ୍ମଶତାବ୍ଦୀ ଉତ୍ସବରେ ମୁଁ ତାଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଅନ୍ତରର ଶ୍ରଦ୍ଧା ଓ ସମ୍ମାନ ଜ୍ଞାପନ କରୁଅଛି ।

ହିନ୍ଦ୍ ସେବକ ସଂଘ
କଟକ

—୦—

# ଲବ ଓ କୁଶ

ନିତ୍ୟାନନ୍ଦ ମହାପାତ୍ର

ମୁଁ ତାଙ୍କୁ ଚିହ୍ନି ନଥିଲି । ଯେମିତି ଜାଣିଲି ଦୁଇଜଣ ଓଡ଼ିଶାର ପ୍ରସିଦ୍ଧଲୋକ ଯାଆଁଳା ହୋଇ ଜନ୍ମ ନେଇଥିଲେ ସେତେବେଳେ ମୋର ମନେ-ପଡ଼ି ଯାଇଥିଲା ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧ ପାଠର ସେହି ପଦଟି—

ଲବ କୁଶ ଦୁହେଁ ଯାଆଁଳା ଭାଇ,
ସାନ ବଡ଼ ବାରି ହୁଅଇ ନାହିଁ ।

ବାରି ନହେଲେ ମଧ୍ୟ ବିଚିତ୍ରାନନ୍ଦ ଆଗ ଭୁବନାନନ୍ଦ ପଛ । ପଛଙ୍କ ସାଙ୍ଗରେ ମୋର ଚିହ୍ନା ପରିଚୟ ନ ଥିଲା । କେବଳ ତାଙ୍କ ନାମ ଶୁଣିଥିଲି ଓ ଛପାଫଟୋ ଦେଖିଥିଲି । ସେ ବହୁ ପିଲାଦିନର କଥା । ପଣ୍ଡିତ ନୀଳକଣ୍ଠ ଓ ଭୁବନାନନ୍ଦ ଦାସ ଯେତେବେଳେ କେନ୍ଦ୍ର ଆସେମ୍ବ୍ଲିକୁ ପ୍ରାର୍ଥୀ ହୋଇଥିଲେ ସେତେବେଳେ ମୋର ବାପା ସ୍ୱର୍ଗତ ସୀତାକାନ୍ତ ମହାପାତ୍ର ଭଦ୍ରକ ସବ୍‌ଡିଭିଜନ ପାଇଁ ପ୍ରଚାରର ଦାୟିତ୍ୱ ନେଇଥିଲେ । ସେତିକିବେଳେ ମୁଁ ତାଙ୍କର ଛବି ସହ ପ୍ରଚାରପତ୍ର ପଢ଼ିଥିଲି । ସେତିକିବେଳେ ମୁଁ ଜାଣିଥିଲି ଯେ ସେ ଇଂଜିନିୟରିଂ ପାଠ ପଢ଼ିଥିଲେ । ମାତ୍ର ଚାକିରି ଛାଡ଼ି ସେ ରାଜନୀତିରେ ଯୋଗଦେଇଥିଲେ ବୋଲି ତାଙ୍କ ପ୍ରଚାରପତ୍ରରୁ ଜାଣିପାରିଥିଲି । କିନ୍ତୁ ଇଂରେଜୀ ଭଲ ଭାବରେ ପଢ଼ିବାପରେ ଆମଘରକୁ ଆସୁଥିବା ସ୍ୱତନ୍ତ୍ରମତବାଦୀ ଇଂରାଜୀ ଖବରକାଗଜ 'ୟଙ୍ଗ୍ ଉତ୍କଳ' ସହିତ ମୋର ପରିଚୟ ବେଶ୍ ଘଟିଲା । ଏସବୁ କଥା କେତେ ସାଲ୍ ତଳେ ହୋଇଥିଲା ମୋର ମନେ ନାହିଁ ।

ତାପରେ ଆସିଲେ ଶ୍ରୀ ବିଚିତ୍ରାନନ୍ଦ ଦାସ ବା ସ୍ୱାମୀଜୀ । ବିଚିତ୍ରାନନ୍ଦ ବାବୁଙ୍କ ସ୍ତ୍ରୀ ମରିଗଲାପରେ ସେ ଯେ ଓଡ଼ିଶା ଦେଶରେ ସ୍ୱାମୀ ନାମ ଘେନି ପ୍ରଚାରିତ ହେଲେ ଏତିକିମାତ୍ର ମୋତେ ଜଣାଥିଲା । ତାଙ୍କର ଗୋଟିଏ ଝିଅ ଥିଲେ, ବୋଧେ ତାଙ୍କ ନାମ ଥିଲା ଲାବଣ୍ୟ । ମୋ ଘର ଉଦଖାରେ । ସ୍ୱାମୀ ବିଚିତ୍ରାନନ୍ଦ ସେତେବେଳେ କଟକର ଓକିଲ । ତାଙ୍କ ଝିଅ ବାହାଘରକୁ ଆମଘରୁ ବେଭାର ଯିବାର ମୋର ବେଶ୍ ମନେଅଛି ।

ତାପରେ ଅନେକଦିନ କଟିଗଲା । ଦିନ ନୁହେଁ ବର୍ଷ । ମୁଁ ଯେତେ-ବେଳେ ୧୯୩୨ କିମ୍ବା ୩୩ ମସିହାରେ ସ୍ୱାଧୀନତା ସଂଗ୍ରାମୀ ଉତ୍କଳ କଂଗ୍ରେସର

ସଭପତି ଭବରେ ସ୍ୱେଚ୍ଛାରେ କାରବରଣ କରିବାକୁ କଟକ ଆସିଲି, ସେହିଦିନ ସର୍ବପ୍ରଥମେ ତାଙ୍କୁ ସାକ୍ଷାତ କରିଥିବା କଥା ମୋର ମନେପଡୁଛି ।

ଏହା ପରେ ଅନେକବର୍ଷ ଗ୍ଳଲିଗଲା— ମୋ ବାପା କାନ୍ତକବି ଲକ୍ଷ୍ମୀ-କାନ୍ତଙ୍କଠାରୁ ସେ ଦୁଇତିନି ବର୍ଷ ବଡ଼ଥିଲେ— ଶ୍ରୀ ବିଚିତ୍ରା ନନ୍ଦ ଦାସ । ଦୁହେଁ-ଯାକ କଲିକତାରେ ପାଠପଢୁଥିଲେ । ସେ ବାପାଙ୍କଠାରୁ ଦୁଇତିନିବର୍ଷ ସିନିୟର ଥିଲେ । ସେହି ସୂତ୍ରରେ ବାପା ଥରେ ସଂପତ୍ତିବାଡ଼ି ମକଦ୍ଦମା ଘେନି ତାଂକ ସହିତ କଥାବାର୍ତ୍ତା ହେବାକୁ ଡଗର ପ୍ରେସରେ ରହିଲେ— କଟକରେ । ବାପାଙ୍କ ଆସିବା ଖବରଶୁଣି ସେ ଡଗର ପ୍ରେସକୁ ଆସି ତାଙ୍କୁ ଦେଖାକରିଥିବା କଥା ମୋର ଏବେବି ମନେ ଅଛି । ଉଭୟଙ୍କର କି ଆନନ୍ଦ ! ଭବିଲେ ଆଖିରେ ଲୁହ ଆସେ ।

ଏହାପରେ ବର୍ଷ କେତେଟା ଗଡ଼ିଗଲା । ଭରତ ସ୍ୱାଧୀନ ହେବାର ଉପକ୍ରମ କରୁଥାଏ । ବିହାରଠାରୁ ସ୍ୱତନ୍ତ୍ର ହୋଇ ଓଡ଼ିଶା ବିଧାନସଭ ବସି-ସାରିଲଣି । ପାରଳାଖେମୁଣ୍ଡି ମହାରଜାଙ୍କ ପରେ ବିଶ୍ୱନାଥ ଦାଶ ସେତେବେଳେ ଓଡ଼ିଶାର ପ୍ରଧାନମନ୍ତ୍ରୀ । ଜାମସେଦପୁର ଟାଟା କମ୍ପାନୀ କାରଖାନାରେ ସେତେବେଳେ ଓଡ଼ିଆଙ୍କ ସଂଖ୍ୟା ବହୁତ ବେଶୀ— ବର୍ତ୍ତମାନ ଭଳି ନଗଣ୍ୟ ନୁହେଁ । ବ୍ରିଟିଶ ଶାସନ ସମୟରେ ଟାଟା କମ୍ପାନୀ ଓଡ଼ିଆ ଭଷାକୁ ଶିକ୍ଷା-କ୍ଷେତ୍ରରେ ଯେପରି ପ୍ରାଧାନ୍ୟ ଦେଉଥିଲେ ସ୍ୱାଧୀନତା ଅଭିମୁଖୀ ବିହାରର କଂଗ୍ରେସ ସରକାର ସେ ସୁବିଧା ପ୍ରାଇମେରୀ ଶିକ୍ଷାକ୍ଷେତ୍ରରୁ ଉଠାଇଦେଲେ । ଏହି ଦୁର୍ଯୋଗରୁ ଓଡ଼ିଆ ପିଲମାନଙ୍କୁ ରକ୍ଷାକରିବାପାଇଁ ଆମେ ତିନିଜଣ ଲୋକ ବାହାରିଥିଲୁ ଜାମସେଦପୁରକୁ— ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କ ନେତୃତ୍ୱରେ ମୁଁ ଓ ନବକିଶୋର ଦାସ । ଓଡ଼ିଶା ସରକାରଙ୍କଠାରୁ କୌଣସି ପ୍ରକାର ସାହାଯ୍ୟ ପାଇବାର ଉପାୟ ନ ପାଇ ଆମେ ଯାଇଥିଲୁ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ଘରକୁ । ସେ ସଙ୍ଗେ ସଙ୍ଗେ ଆବଶ୍ୟକ ଅର୍ଥ ନିଜ ପକେଟରୁ କାଢ଼ି ଦେଇଥିଲେ । ମୋର ମନେଅଛି । କେତେଟଙ୍କା ଦେଇଥିଲେ ମୁଁ କହିପାରିବି ନାହିଁ ମାତ୍ର ତାଙ୍କରି ଦାନରେ ହିଁ ଆମେ ତିନିହେଁ ଜାମସେଦପୁର ଯାଇଥିଲୁ ଓ ଓଡ଼ିଆଙ୍କ ପାଇଁ ଯାହା କରିବାର କଥା ତାହା ସେଠାରେ ସମ୍ଭବ ହୋଇଥିଲା ।

ଏହାପରେ ବିଚିତ୍ରାନନ୍ଦବାବୁଙ୍କୁ ମୁଁ ଓଡ଼ିଶା ଆସେମ୍ବ୍ଲିରେ ବକ୍ତୃତା ଦେବାର ଶୁଣିଛି— ଜଣେ ସାମାଜିକ ଭବରେ । ସେ ସ୍ପଷ୍ଟବକ୍ତା—ଭବ ପ୍ରବଣତାରେ ସବୁବେଳେ ଉତ୍ସାହପୂର୍ଣ୍ଣ ବାକ୍ୟ ଉତ୍‌ଥାପନ କରିବାରେ ପଟୁ ।

କୃଶ ଆଗରୁ ଗ୍ଲଲିଯାଇଥିଲେ । କିନ୍ତୁ କେନ୍ଦ୍ର ଆସେମ୍ବ୍ଲି ଏବଂ ସ୍ୱାଧୀନ ଭରତର ବିଧାନସଭରେ ସର୍ବାଧିକକାଳ ସଭ୍ୟ ରହି ସେ ଯେପରି ସୁନାମ ଅର୍ଜନ କରିଯାଇଛନ୍ତି, ତାହା ଅନ୍ୟ କୌଣସି ଭରତୀୟଙ୍କ ପକ୍ଷରେ ସମ୍ଭବ ହୋଇନାହିଁ । ବିଚିତ୍ରାନନ୍ଦ ବାବୁ ସ୍ୱାଧୀନତା ଉତ୍ତରକାଳରେ ଓଡ଼ିଶାର ପ୍ରଥମ ଆଡ୍‌ଭୋକେଟ୍ ଜେନେରଲ ପଦରେ ଅଧିଷ୍ଠିତ ହୋଇଥିଲେ । ଏହାପରେ ସେ ପୁଣି ବିଧାନ-ସଭକୁ ଆସି ବିରୋଧୀଦଳ ନେତାରୂପେ ନିର୍ବାଚିତ ହୋଇଥିଲେ, ମାତ୍ର ରଜନୀତିରୁ ଓହରିଯାଇ ସେ ତାଙ୍କର ସମସ୍ତ ସମୟ ସମାଜ କଲ୍ୟାଣ କାର୍ଯ୍ୟରେ ନିୟୋଗ କରିଥିଲେ ।

ସମାଜ ସେବା କାର୍ଯ୍ୟରେ ନିଜର ସମୟ ଆନନ୍ଦର ସହ କଟାଇଦେଇ ସେ ଓଡ଼ିଶାର ପ୍ରକୃତ ସ୍ୱାମୀଜୀ ରୂପେ ନିଜକୁ ପ୍ରତିଷ୍ଠିତ କରିଯାଇଛନ୍ତି । ତାଙ୍କ ସମାଜସେବାରେ ମୁଗ୍‌ଧ ହୋଇ ସ୍ୱର୍ଗତ ଠକ୍‌କର ବାପା ତାଙ୍କୁ ସର୍ବପ୍ରଥମେ ସ୍ୱାମୀଜୀ ବୋଲି ଡାକିଥିଲେ । ବନ୍ୟା ପ୍ରପୀଡ଼ିତ ଲୋକଙ୍କ ପାଇଁ ସାହାଯ୍ୟ ଦେବାରେ ସେ ଅଗ୍ରଣୀ ଥିଲେ । କଟକରେ ଓଡ଼ିଶା ଅନାଥାଶ୍ରମ ନାମକ ସମାଜ କଲ୍ୟାଣ ମୂଳକ ଅନୁଷ୍ଠାନ ତାଙ୍କରି କୃତି ।

ଅତି ସରଳ ଜୀବନ ଯାପନ ଥିଲା ତାଙ୍କ ଜୀବନର ଆଦର୍ଶ । ଦୈନନ୍ଦିନ ଜୀବନରେ ସେ ବହୁ ଛାତ୍ର, କର୍ମୀ, ଦୁଃସ୍ଥ ନାଗରିକମାନଙ୍କୁ ଅନାୟାସରେ ଦାନକରି ଆନନ୍ଦ ଲଭ କରୁଥିଲେ । ତାଙ୍କର ବାସଭବନ ଗୋଟିଏ ଅତିଥିଶାଳା ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ମୁଁ ମନ୍ତ୍ରୀ ଥିଲାବେଳେ କଟକ ଯାଇ ତାଙ୍କୁ ସାକ୍ଷାତ କରିଥିଲି । ତାଙ୍କର ଆଶୀର୍ବାଦ ଘେନି ଛଳଛଳ ଆଖିରେ ମୁଁ ଫେରିଆସିଲି ।

ତାପରେ ଆଉ ଭେଟ ହୋଇନାହିଁ ।

—O—

"କାନ୍ତକୁଟୀର"
ଡି/୪, ଲେବର କଲୋନି
ଖାରବେଳ ନଗର, ୟୁନିଟ୍—୩ ଭୁବନେଶ୍ୱର—୧

# ସ୍ୱାମୀ ବିଚିତ୍ରାନନ୍ଦଙ୍କ ସ୍ମରଣେ

**ଶ୍ରୀ ନବକିଶୋର ଦାସ**

ସ୍ୱାମୀ ବିଚିତ୍ରାନନ୍ଦ ଦାସ ଜଣେ ବିଦ୍ୱାନ, ବୁଦ୍ଧିମାନ ଓ ବିଚକ୍ଷଣ ଆଡ୍‌ଭୋକେଟ୍ ଓ ଜାତୀୟବାଦୀ ନେତା ଥିଲେ । ସେ ଓଡ଼ିଶା ଆନ୍ଦୋଳନରେ ପୂର୍ଣ୍ଣ ପ୍ରାଣରେ ଉତ୍କଳ ଗୌରବ ମଧୁସୂଦନଙ୍କ ଠାରୁ ପ୍ରେରଣା ପାଇ କାର୍ଯ୍ୟ କରିଥିଲେ, ଏପରିକି ପରିଣତ ବୟସରେ ମେଦିନୀପୁର ଯାଇ ଉତ୍କଳ ସମ୍ମିଳନୀରେ ସଭାପତି ଭାବରେ ଯୋଗ ଦେଇଥିଲେ । ତାଙ୍କର ଭାଇ ଭୁବନାନନ୍ଦ ଦାସ ଓ ଗଞ୍ଜାମର ତାଙ୍କ ବନ୍ଧୁ ନିରଞ୍ଜନ ପଟ୍ଟନାୟକ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ପାଇଁ ବହୁକାର୍ଯ୍ୟ କରୁଥିଲେ ମଧ୍ୟ, ସ୍ୱାମୀ ବିଚିତ୍ରାନନ୍ଦ ଯେପରି ଭାବରେ ତାଙ୍କ ଓକିଲାତି ଆୟ ଦେଶ ମିଶ୍ରଣ ପାଇଁ ଅକାତରରେ ଖର୍ଚ୍ଚ କରୁଥିଲେ, ଦେଶ ପାଇଁ ସେପରି ସ୍ୱାର୍ଥତ୍ୟାଗ କ୍ୱଚିତ୍ ଦେଖିବାକୁ ମିଳେ । ସ୍ୱାମୀ ବିଚିତ୍ରାନନ୍ଦ ମଧ୍ୟ ସ୍ୱାଧୀନତା ସଂଗ୍ରାମୀ ନେତା ଓ କର୍ମୀମାନଙ୍କର ଆଶ୍ରୟ ଥିଲେ ।

ଶିଳ୍ପ କ୍ଷେତ୍ରରେ ସ୍ୱାମୀଜୀ ମହାତ୍ମାଗାନ୍ଧୀଙ୍କ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇଥିଲେ । କହିବାକୁ ଗଲେ ମଧୁସୂଦନ ଯେଉଁ ଗ୍ରାମ-ଶିଳ୍ପ ଓ କୁଟୀର ଶିଳ୍ପର ପୁନରୁଦ୍ଧାର ଚାହୁଁଥିଲେ, ମହାତ୍ମାଗାନ୍ଧୀ ତାହାହିଁ ଭାରତ ସାରା ପ୍ରଚାର କରୁଥିଲେ, ଏବଂ ସ୍ୱାମୀଜୀ ମଧୁସୂଦନଙ୍କର ପଟ୍ଟଶିଷ୍ୟ ହୋଇ ସେହି ନୀତିର ଅନୁସରଣ କରୁଥିଲେ । ଯନ୍ତ୍ରଶିଳ୍ପ କ୍ଷେତ୍ରରେ ସେ ଦେଶକୁ ସ୍ୱାବଲମ୍ବୀ ହେବା ପାଇଁ ଚାହୁଁଥିଲେ । ତେଣୁ ଭାଇ ଭୁବନାନନ୍ଦ ଦାସଙ୍କ ସହିତ ମିଳିତ ହୋଇ ପୁରୀ ବିଜୁଳି କମ୍ପାନୀ ପ୍ରତିଷ୍ଠା କରିବାରେ ଆଗ୍ରହୀ ହୋଇଥିଲେ ।

ସମାଜସେବାହିଁ ସ୍ୱାମୀଜୀଙ୍କ ମହାନତାର ବିଶିଷ୍ଟ ଦିଗ ଥିଲା । ସେ ଅସହାୟ ମହିଳା ଓ ଶିଶୁମାନଙ୍କ ପାଇଁ ଅନାଥାଶ୍ରମ ସ୍ଥାପନ କରି, ନିଜ ଖର୍ଚ୍ଚରେ ତାହା ପରିଚାଳନା କରୁଥିଲେ । ସ୍ୱାମୀ ବିଚିତ୍ରାନନ୍ଦ ବାସ୍ତବରେ ଦୁଃଖୀ, ଦରିଦ୍ର ଜନସାଧାରଣଙ୍କ ପରମବନ୍ଧୁ ଓ ଆଶ୍ରୟ ଦାତା ଥିଲେ ।

ମୁଁ ତାହାଙ୍କ ସିରସ୍ତାରେ ଆର୍ଟିକ୍ଲ କ୍ଲର୍କ (Article Clerk) ଭାବରେ ଏକ ବର୍ଷ କାଳ ଆଇନ କାର୍ଯ୍ୟରେ ଶିକ୍ଷା ଲାଭ କରି ଓଡ଼ିଶା ହାଇ-କୋର୍ଟର ଆଡ଼ଭୋକେଟ୍ ହୋଇଥିଲି । ମୁଁ ସ୍ୱାମୀଜୀଙ୍କ ସିରସ୍ତାରେ ପ୍ରାୟ ଏକ ବର୍ଷ କାର୍ଯ୍ୟ କରିଥିଲି ଏବଂ ସେହି ସମୟ ମଧ୍ୟରେ ପ୍ରାୟ ଦୁଇଶହ ମକଦ୍ଦମା ସ୍ୱାମୀ ବିଚିତ୍ରାନନ୍ଦଙ୍କ ସହ ଶୁଣାଣି ଓ ଦରଖାସ୍ତ ପ୍ରସ୍ତୁତିରେ କାର୍ଯ୍ୟ କରିଥିଲି । ସେ ତାଙ୍କ ଅଧସ୍ତନ ଆଡ଼ଭୋକେଟ୍‌ମାନଙ୍କୁ କାର୍ଯ୍ୟଦେଲେ, ଅର୍ଥ ସାହାଯ୍ୟ ମଧ୍ୟ ଦେଉଥିଲେ । ମୁଁ ଆର୍ଟିକ୍ଲ କ୍ଲର୍କ ଭାବରେ କୌଣସି ଫିସ ପାଇବାକୁ ହକଦାର ନହେଲେ ମଧ୍ୟ, ସେ ମୋତେ ନିୟମିତ ମାସକୁ ଅନ୍ୟୂନ ୩ ଶହ ଟଙ୍କା ଯାଏ ରୋଜଗାର କରାଇ ଦେଉଥିଲେ । ସେ ଆମ୍ଭଭଳି ଆଡ଼ଭୋକେଟ୍‌ଙ୍କୁ ଶିକ୍ଷା ଦେଇ-ଥିଲେ ଯେ କୌଣସି ମକଦ୍ଦମା ପାଇଲେ, ମକଦ୍ଦମାର ବିବରଣୀର ଏକ ପୂର୍ଣ୍ଣ ନୋଟ ବା ବିବରଣୀ ଚିଠା ପ୍ରଥମେ ପ୍ରସ୍ତୁତ କରି ନ ଥିଲେ ରଖିବା ଦରକାର । କୌଣସି ଆଡ଼ଭୋକେଟ୍ ଏଥିରେ ହେଳା କଲେ, ସେ ଉକ୍ତ ମକଦ୍ଦମା ନଥି ଦେଖୁନଥିଲେ । ତାଙ୍କ ବକ୍ତୃତା ବା ତର୍କ-ବିତର୍କ କରିବାରେ ଟିକିଏ ପାଟି ଲାଗୁ-ଥିଲେ ମଧ୍ୟ, ତାଙ୍କର ତୀକ୍ଷ୍ଣ ମେଧା ଓ ବୁଦ୍ଧି ବିଚକ୍ଷଣତା ଥିଲା ଏବଂ ଆଇନ ବିଷୟରେ ବିଶେଷ ପାରଦର୍ଶିତା ଓ ଗବେଷଣା ଥିଲା । ତାଙ୍କ ସିରସ୍ତାର ବିଶେଷତ୍ୱ ଥିଲା ମକଦ୍ଦମା ଚିଠା ପ୍ରସ୍ତୁତିରେ ସତର୍କତା ଓ ଲେଖା ଲେଖିରେ ପାରଦର୍ଶିତା ।

ସ୍ୱାମୀଜୀ ତାହାଙ୍କ ଜୁନିୟରମାନଙ୍କୁ କାର୍ଯ୍ୟ କରିବାରେ ବିଶେଷ ସ୍ୱାଧୀନତା ଦେଇଥିଲେ ଓ ଜୁନିୟରମାନଙ୍କ ମତାମତ ପ୍ରତି ମର୍ଯ୍ୟାଦା ମଧ୍ୟ ଦେଉଥିଲେ । ଏହି ସଂକ୍ରାନ୍ତରେ ମୋର ମନେ ପଡୁଛି ଯେ ଥରେ ଗୋଟିଏ ବଡ ଟାଇଟଲସୁଟ୍ ମୋ ମତ ଅନୁଯାୟୀ ମିଛ ମାମଲା ବୋଲି ଜାଣି ନେଲା ପରେ ସେ ତାର ଅପିଲ ଲଢ଼ିବାକୁ ରାଜି ହେଲେ ନାହିଁ । କୌଣସି କାର୍ଯ୍ୟ ଦେଲେ, ଅଳ୍ପ ବହୁତ ଫିସ୍ ଦେଉଥିଲେ । ଆମ୍ଭେମାନେ ମକଦ୍ଦମା ପାଇଲେ, ପ୍ରଥମେ ପକ୍ଷକୁ ସବୁ ପଚାରି ବିବରଣୀଟି ଶୁଣୁଥିଲୁ ଏବଂ ତଳକୋର୍ଟ ଓ ଅପିଲ କୋର୍ଟରାୟ ପଢ଼ି ବିବରଣୀ ସବୁ ଠିକ୍ ନୋଟ କରି ଆଇନ ପଏଣ୍ଟ ବାହାର କରୁଥିଲୁଁ ଓ ନଜିର ମଧ୍ୟ ଦେଖୁଥିଲୁଁ । ସ୍ୱାମୀଜୀ ଏସବୁ ନୋଟ ପଢ଼ି ତାଙ୍କର ମତାମତା ଦେଉଥିଲେ । କୌଣସି ଆଡ଼ଭୋକେଟ୍ ସାହାଯ୍ୟ ଚାହିଁଲେ ସେ ମକଦ୍ଦମା ଫାଇଲ ପଠାଇ ଦେଉଥିଲେ, ଫିସ ସହ ।

ସ୍ୱାମୀଜୀ ସ୍ୱାଧୀନତାପରେ ଓଡ଼ିଶାର ପ୍ରଥମ ଆଡ୍‌ଭୋକେଟ୍ ଜେନେରାଲ ଭାବରେ ବିଶିଷ୍ଟ ସମ୍ମାନର ଅଧିକାରୀ ହୋଇଥିଲେ । ସେ ସାରା ଜୀବନ କଂଗ୍ରେସର ଅନୁଗତ ସଭ୍ୟ ଥିଲେ । କଂଗ୍ରେସର ବିପତ୍ତିବେଳେ ଯେତେବେଳେ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ଯଦୁମଣି ମଂଗରାଜ ପ୍ରଭୃତି ପାରଳା ମହାରାଜାଙ୍କ ସହିତ ମିଳିତ ହୋଇ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ିଲେ, ସେତେବେଳେ ସ୍ୱାମୀଜୀହିଁ ଥିଲେ କଂଗ୍ରେସ ଦଳର ମୁଖ୍ୟ ରକ୍ଷାକର୍ତ୍ତା ।

ସ୍ୱାମୀଜୀଙ୍କ ମୃତ୍ୟୁ ପୂର୍ବରୁ ସେ ଆଡ୍‌ଭୋକେଟ୍ କାର୍ଯ୍ୟରୁ ଅବସର ନେଇ ଘରେ ରହୁଥିଲେ ଓ ମୃତ୍ୟୁପୂର୍ବରୁ ରୋଗାକ୍ରାନ୍ତ ହୋଇଯାଇଥିଲେ । ସ୍ୱାମୀଜୀ ଯୌବନ ସମୟରୁ ତାଙ୍କ ସ୍ତ୍ରୀଙ୍କୁ ହରାଇ ଆଉ ବିବାହ କରିନଥିଲେ ।

ସ୍ୱାମୀଜୀ ତାହାଙ୍କ ପତ୍ନୀଙ୍କୁ ଅତିସୁଖ ପାଉଥିଲେ ଏବଂ ନିର୍ଦ୍ଦେଶ ଦେଇ-ଥିଲେ ଯେ ତାଙ୍କ ସ୍ମୃତିଫଳକ ସ୍ୱତନ୍ତ୍ର ଭାବରେ ନ ରହି ତାଙ୍କ ସ୍ତ୍ରୀଙ୍କ ସମାଧିରେ ରହିବ, ତାହାହିଁ ହୋଇଅଛି । ସେ ମଧ୍ୟ କହିଯାଇଥିଲେ ଯେ ମଲାପରେ ତାଙ୍କ ଦୁଇହାତ ପଦାକୁ ଦେଖାଇ ଶବ ନେବ । କାରଣ ସେ ସଂସାରରୁ କିଛି ନେଇ ଯାଉ ନାହାଁନ୍ତି । ସେ ଜଣେ ଖାଣ୍ଟି ଓଡ଼ିଆ ଏବଂ ଭାରତୀୟ ଜାତୀୟତାରେ ଦୃଢ଼ ବିଶ୍ୱାସୀ ଥିଲେ ।

ସମସ୍ତ ଜନହିତକର ପ୍ରଚେଷ୍ଟାରେ ସେ ଯୁଗରେ ସ୍ୱାମୀଜୀଙ୍କର ସହ-ଯୋଗ ଓ ସାହାଯ୍ୟ ଥିଲା ।

ମୃତ୍ୟୁ ନୁହେଁ ମଣିଷର
ଶେଷ ପରିଣତି,
ସ୍ୱାମୀଜୀଙ୍କ ପଦପ୍ରାନ୍ତେ
ଜଣାଏ ପ୍ରଣତି ।

—୦—

# ଅଳଭାସ୍ମୃତି

**ଶ୍ରୀ ଶରତ କୁମାର ମହାନ୍ତ**

୧୯୪୨ରୁ ୧୯୪୭ ପ୍ରାୟ ପାଞ୍ଚ ବର୍ଷ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ଓକିଲତି ସିରସ୍ତାରେ ତାଙ୍କ ସହକର୍ମୀ ହିସାବରେ କାମ କରିବାର ସୁଯୋଗ ପାଇଥିଲି ।

ଓକିଲତି ଶିକ୍ଷାକୁ ଛାଡ଼ି ମଣିଷ ପରି ମଣିଷଟିଏ ହେବାକୁ ସ୍ୱାମୀଜୀଙ୍କ ବ୍ୟକ୍ତିଗତ ଜୀବନରୁ ପ୍ରତିଦିନ ଶିକ୍ଷା ମିଳିଥାଏ । ଖଦଡ଼ର ଗେରୁଆ ବାସ ପିନ୍ଧି ପ୍ରତିଦିନ ସକାଳେ ସନ୍ଧ୍ୟାରେ ତାଙ୍କ ସିରସ୍ତାରେ ସେ ବସନ୍ତି । ଆମେସବୁ ସହ-କର୍ମୀମାନେ ତାଙ୍କର ଉଭୟ ପାଖରେ ବସୁ । ସେ ସମୟର ସହକର୍ମୀ ହେଲେ–ଶ୍ରୀକାନ୍ତବାବୁ, ଗୋଲଖବାବୁ, ନବକିଶୋର ବାବୁ ଆଉ ମୁଁ ।

ଦିନକର ସକାଳ ଘଟଣା । ସିରସ୍ତା ଚାଲିଥାଏ । ହଠାତ୍ ଜଣେ ଲୋକ ପହଞ୍ଚିଲେ ଦରଜା ପାଖରେ । ସ୍ୱାମୀଜୀଙ୍କୁ ମଧୁପୁର ପଟ୍ଟାୟତ ଅତି ଅସୁସ୍ଥ ବୋଲି ଜଣାଇଲେ ଏବଂ ପଟ୍ଟାୟତଙ୍କ ସ୍ୱାସ୍ଥ୍ୟ ପାଇଁ କିଛି ଅର୍ଥର ଆବଶ୍ୟକତା ଅଛି ବୋଲି କହିଲେ । କଥାଟା ଶୁଣୁ, ଶୁଣୁ କାହାରିକୁ କିଛି ନ କହି ସ୍ୱାମୀଜୀ ନିଜର ଆସନ ଛାଡ଼ି ତାଙ୍କର ଶୋଇବା ଘରକୁ ଉଠିଗଲେ । କଣ ହେଲା ଜାଣିବାକୁ ମୋର କୌତୂହଳ ହେଲା । ତାଙ୍କ ପଛେ ପଛେ ସେ ନ ଜାଣିବା ପରି ମୁଁ ମଧ୍ୟ ଛପି ଛପି ଚାଲିଲି ।

ସ୍ୱାମୀଜୀଙ୍କ ଶୋଇବା ଘର । ୬/୭ ଇଞ୍ଚ ଉଚ୍ଚତାର ଗୋଟାଏ ପଟା ଖଟ ପଡ଼ିଥାଏ । ତା ଉପରେ ଖଦଡ଼ର ଗେରୁଆ ଚାଦର ଆଉ ଗେରୁଆ ରଙ୍ଗର ତକିଆ ଖୋଳ ସହ ତକିଆ । ସେଇ ଖଟର ଗୋଟାଏ କୋଣରେ ବଡ଼ କାଠ ଆଲମାରୀ । ସେଇ ଆଲମାରୀଟି ସ୍ୱାମୀଜୀ ବ୍ୟବହାର କରନ୍ତି । ମୁଁ ନୀରବରେ ଲକ୍ଷ୍ୟ କରୁଥାଏ । ସ୍ୱାମୀଜୀ ଧୀରେ ଧୀରେ ଯାଇ ସେ ଆଲମାରୀ ଖୋଲିଲେ । ସବୁଥାକ ଦରଣ୍ଡି ପକାଇଲେ । ଶେଷରେ ହତାଶ ହେଲପରି ଖୋଲା ଆଲମାରୀର

ଦୁଇ କବାଟକୁ ଧରି ଥାକ ଗୁଡ଼ିକୁ ଚାହିଁ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ କହି ଉଠିଲେ, "ହେ ପ୍ରଭୁ ମୋ ପାଖରେ ତ କିଛି ନାହିଁ । ବିନା ସାହାଯ୍ୟରେ ମୋ ବନ୍ଧୁ କଣ ଚାଲିଯିବେ ।" ଏତକ କହି ଆଲମାରୀର କବାଟକୁ ଜୋରରେ ବାଡ଼େଇ ବନ୍ଦ କଲେ । ମୁହଁ ବୁଲାଇ ସିରସ୍ତା ଆଡ଼କୁ ଚାଲିଲେ । କି ଦୁଃଖ ତାଙ୍କର ! ସେତେବେଳର ମୁହଁଟି ତାଙ୍କର ବର୍ତ୍ତମାନ ସୁଦ୍ଧା ଆଖି ଆଗରେ ନାଚି ଯାଉଛି । ସେ ସିରସ୍ତାକୁ ଫେରିବା ପୂର୍ବରୁ ମୁଁ ଫେରିଯାଇ କିଛି ନ ଜାଣିବା ପରି ମୋ ଜାଗାଟିରେ ବସି ପଡ଼ିଥିଲି ।

ସ୍ୱାମୀଜୀ କାହାରିକୁ କିଛି ନ କହି ଅତି ଦୁଃଖରେ ଆସି ତାଙ୍କ ଆସନରେ ବସି ପଡ଼ିଲେ । ପ୍ରକୃତ ଦୁଃଖୀର ପାଖେ ପାଖେ ଠାକୁର ଥାଆନ୍ତି । ନ ଦେଖିଲେ ବିଶ୍ୱାସ ହୁଏ ନାହିଁ ଠାକୁରଙ୍କ ବିଚିତ୍ର ଲୀଳା । ସ୍ୱାମୀଜୀ ନିଜ ଆସନରେ ବସିବା ପରେ ପରେ ଜଣେ ମହକିଲ ହଠାତ୍ ଅଫିସ ଭିତରକୁ ପଶି ଆସି ସ୍ୱାମୀଜୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲେ । ସେ ଅତି ଗରିବ,ତାଙ୍କ ଦୁଃଖ ସ୍ୱାମୀଜୀ ଶୁଣିବେ କହି ସ୍ୱାମୀଜୀଙ୍କ ସାମ୍ନା ଟେବୁଲ ଉପରେ କାଗଜପତ୍ର ସହ ବିଡ଼ାଏ ନୋଟ ଥୋଇଲେ । କଳାମେଘରେ ବିଜୁଳି ଚମକିଲା ପରି ସ୍ୱାମୀଜୀଙ୍କ ଶୁଖିଲା ମୁହଁ ଉଜଳି ଉଠିଲା । ସେହି ବିଡ଼ାକ ନୋଟ ସେହିପରି ଉଠାଇ ନେଇ 'ଠାକୁର ତୁ କେତେ ବଡ଼" କହି ପଞ୍ଚାୟତଙ୍କ ଲୋକ ପାଖକୁ ଛୁଟି ଗଲେ । ନୋଟ ବିଡ଼ାଟି ଲୋକ ହାତରେ ଧରାଇ ଦେଇ କହିଲେ—"ଶୀଘ୍ର ଯାଅ, ପଞ୍ଚାୟତଙ୍କ ସେବାରେ ଯେମିତି ଅବହେଳା ନ ହୁଏ ଦେଖ ।" ସେତକ ଦେଇ ସାରି ତାଙ୍କ ମନରେ କି ଆନନ୍ଦ, କି ତୃପ୍ତି । ନ ଦେଖିବା ଲୋକ ବୁଝି ପାରିବ ନାହିଁ ।

ତା' ପରେ ନିଜ ଆସନକୁ ଫେରି ଆସି ମହକିଲଙ୍କର କାଗଜ ବିଡ଼ାଟି ମୋ ହାତରେ ଧରାଇ ଦେଇ ମହକିଲଙ୍କୁ ମୋତେ ସବୁ କଥା ଜଣାଇବାକୁ କହିଲେ । ତାଙ୍କଠାରୁ ସାଧାରଣ ଭାବରେ ସବୁ ବୁଝି ଲେଖି ପରେ ତାଙ୍କୁ ଜଣାଇବାକୁ ମୋତେ ନିର୍ଦ୍ଦେଶ ଦେଲେ ।

ଏ'ତ ଦିନକର ଘଟଣା । ଘଟଣାଟିର ଦିନବାର ସାଲ ମୋର ଠିକ୍ ମନେ ନାହିଁ । କିନ୍ତୁ ଘଟଣାଟି ଏମିତି ହୃଦୟସ୍ପର୍ଶୀ ଯେ ଭୁଲି ହୁଏ ନାହିଁ । ଏହି-

ପରି କେତେ ଯେ ଘଟଣା, ସ୍ୱାମୀଜୀଙ୍କ ସିରସ୍ତାରେ ଘଟିଥାଏ... ଲେଖି ବସିଲେ ବିରାଟ ପୋଥି ହେବ । ପର ପାଇଁ ନିଜକୁ ନିଃଶେଷ କରିଦେବାର ଆନନ୍ଦ ସ୍ୱାମୀଜୀ ସବୁବେଳେ ପାଉଥିଲେ । ଏଭଳି ମହାନ ବ୍ୟକ୍ତିତ୍ୱର ସଂସ୍ପର୍ଶରେ ଆସି-ବାର ସୁଯୋଗ ପାଇଥିବାରୁ ମୁଁ ନିଜକୁ ଧନ୍ୟ ମନେ କରେ ।

—o—

ଶ୍ରୀ ଶରତ କୁମାର ମହାନ୍ତି ।
(ଅବସର ପ୍ରାପ୍ତ ଜିଲ୍ଲାଜଜ)
ଆଡ୍‌ଭୋକେଟ୍

# ପ୍ରେମ ସ୍ୱରୂପ

ଶ୍ରୀ ଗଣନାଥ ଦାସ

ଅନେକ କାଳ ତଳର କଥା । ମୋ ଭିଣୋଇ ✓ ଶ୍ରୀକାନ୍ତ ମହାନ୍ତି ସ୍ୱାମୀଜୀଙ୍କର ଜୁନିୟର ଥାଆନ୍ତି । ୧୯୩୨ ମସିହାରୁ ୧୯୩୬ ପର୍ଯ୍ୟନ୍ତ କଟକ ରେଭେନ୍‌ସା କଲେଜରେ ପଢୁଥିବା ସମୟରେ ତାଙ୍କୁ ଭେଟିବା ପାଇଁ କେବେ କେବେ ସ୍ୱାମୀଜୀଙ୍କ ଡଗରପଡ଼ା ଘରକୁ ଯାଇଛି । ଯେବେ ଯାଇଛି ଲକ୍ଷ୍ୟ କରିଛି—ସ୍ୱାମୀଜୀଙ୍କର ସହଜ, ସରଳ, ଆମାୟିକ ଭାବ, ହସ ହସ ମୁହଁ, ମନ ଖୋଲା କଥା । ତାଙ୍କର ସ୍ନେହପୂର୍ଣ୍ଣ ସରଳ ବ୍ୟବହାର ମୋ ଉପରେ ସେହିକାଳରୁ ଗଭୀର ରେଖାପାତ କରିଥିଲା ।

କାଳକ୍ରମେ ପାଠ ସାରି ସରକାରୀ ଚାକିରି କରିବା ଅବସରରେ ୧୯୪୦-୪୧ ମସିହାରେ ଖୋର୍ଦ୍ଧା ଖାସମାହାଲର ତହସିଲଦାର ଭାବେ ଅବସ୍ଥାପିତ ହୋଇଥିବା ସମୟରେ ମୋତେ ସାମୟିକ ଭାବରେ ଛଅ ସପ୍ତାହ ପାଇଁ ତହସିଲଦାର ରୂପେ ଯିବାକୁ ପଡ଼ିଥିଲା ବାଣପୁର । ବାଣପୁରର ମୁକରିର ତହସିଲଦାର ଶ୍ରୀ ବିଶ୍ୱାଳ ଖୋର୍ଦ୍ଧାରେ ମୋ ସ୍ଥାନରେ କାର୍ଯ୍ୟକରି ଉକ୍ତ ସମୟ ମଧ୍ୟରେ Case record ପ୍ରସ୍ତୁତ କରିବେ, ଯେଉଁଥିପାଇଁ ସୁବିଧା ବାଣ-ପୁରରେ ନ ଥାଏ ।

ବାଣପୁରରେ ଯୋଗ ଦେବାର ଦୁଇ ସପ୍ତାହ ମଧ୍ୟରେ ମୋର ଜଣେ ବନ୍ଧୁ ମୋତେ ବାଣପୁରରେ ଭେଟି ଖବର ଦେଲେ ଯେ ମୋର ବାଣପୁରରେ ମୁକରିର ଭାବରେ ରହିବାର ପ୍ରସ୍ତାବ ହେଉଛି ବୋଲି ସେ କଟକରେ ବିଶ୍ୱସ୍ତ ସୂତ୍ରରୁ ଶୁଣିଲେ ।

ବାଣପୁରରୁ ଛଅ ସପ୍ତାହ ପରେ ନିର୍ଦ୍ଦିଷ୍ଟ ଭାବରେ ମୋର ଖୋର୍ଦ୍ଧା ଫେରିଯିବା କଥା । ମୋର ପିଲା ପିଲିଙ୍କୁ ( ମା' ଓ ସ୍ତ୍ରୀ ) କଟକରେ ଭାଇଙ୍କ ପାଖେ ଛାଡ଼ି ବାଣପୁର ଆସିଥାଏ । ବାଣପୁରରେ ଅବସ୍ଥାପିତ ହେବା ପୂର୍ବରୁ ବାଣପୁର ବିଷୟରେ ମୋର ବିଶେଷ କିଛି ଧାରଣା ନ ଥାଏ । ସହକର୍ମୀ

ଶ୍ରୀ ବିଶ୍ୱାଳଙ୍କଠାରୁ ଯେତେବେଳେ ଶୁଣିବାକୁ ପାଇଲି ହନ୍ତଓ୍ୱାର ( ବାଣପୁର ତହସିଲର ସଦର ମହକୁମା )ରେ ବସିଥିବ, ପେଗ୍ରଗବ ଶୁଣୁଥିବ, ଅଳ୍ପଦିନ ପାଇଁ ହେଲେ ସୁଦ୍ଧା ମନଟା ଖଟା ଖଟା ହୋଇ ଯାଇଥିଲା । ତେଣୁ ବନ୍ଧୁଙ୍କଠାରୁ ସେଠାରେ ମୁକରିର ହୋଇ ଅନ୍ତତଃ ତିନିବର୍ଷ ରହିବାର ସମ୍ଭାବ୍ୟର ସୂଚନା ପାଇ ମନଟା ବିଦ୍ରୋହ କରି ଉଠିଲା ।

ଖୋର୍ଦ୍ଧା ଏସ.ଡି.ଓ. ଥାଆନ୍ତି ମିଃ ମ୍ୟାକ ଡୋନାଲ୍‌ଡ, ଆଇ.ସି.ଏସ୍. । ତାଙ୍କୁ କହି ଦୁଇଦିନ ଛୁଟି ନେଇ କଟକ ଗଲି ଭିଣୋଇ ଶ୍ରୀକାନ୍ତ ମହାନ୍ତିଙ୍କ ସଙ୍ଗେ ପରାମର୍ଶ କରିବାକୁ । ମୁଁ ତାଙ୍କ ଘରେ ପହଞ୍ଚିଲା ବେଳକୁ ସେ ଯାଇଥାନ୍ତି ସିନିୟର ସ୍ୱାମୀଜୀଙ୍କ ଘରକୁ । ବ୍ୟଗ୍ରତା ବଶତଃ ମୁଁ ଗଲି ତାଙ୍କୁ ସେଠାରେ ଭେଟିବାକୁ । ଭିଣୋଇଙ୍କ ସହ ଏକାନ୍ତରେ କଥାବାର୍ତ୍ତା ହେବାକୁ ଭିତରୁ ଡକାଇ ପଠାଇଲି । ସ୍ୱାମୀଜୀ ଶ୍ରୀକାନ୍ତବାବୁଙ୍କ ଠାରୁ ଜାଣିପାରି ମତେ ଭିତରକୁ ଡାକି ନେବାକୁ କହିଲେ ।

ସ୍ୱାମୀଜୀଙ୍କ ଅଫିସ କୋଠରି ଭିତରକୁ ଗଲାରୁ ମୋତେ ଦେଖି ହସୁ ହସୁ ଟିକେ ଅଟକି ଯାଇ କହିଲେ – କିହୋ, ବସ ବସ କଥା କଅଣ ? ଭିଣୋଇଙ୍କୁ ଏପରି ଜରୁରୀ ଡାକରା କାହିଁକି ?

ସ୍ୱାମୀଜୀଙ୍କ ପରି ବିରଳ କେହି କେହି, ହୋଇପାରେ ଲକ୍ଷେରେ ଗୋଟିଏ ମିଳି ପାରନ୍ତି । ତାଙ୍କର ଛଳନା ହୀନତା । ତାଙ୍କୁ ଦେଖିଲେ ମନେହୁଏ ସତେ ଯେପରି ଗୋଟାପଣେ ତୁମ ଆଗରେ ଛିଡ଼ା ହୋଇଛନ୍ତି, ଭିତର ବାହାର ଏକାକାର । ସବୁ ଜଳ ଜଳ ଦେଖା ଯାଉଛି । ଭଣ୍ଡିବାର କିଛି ନାହିଁ । ଯାହା ଦେଖୁଛ ସେଇଆ, ଯାହା ଶୁଣୁଛ ସେଇଆ ।

ଇଏ ଛଳନା ହୀନତା ବିରଳ ହେଲେ ମଧ୍ୟ, ବଡ଼ ସଂକ୍ରାମକ । ତାଙ୍କ ପାଖରେ ଛଳନା କରିହୁଏ ନାହିଁ । ଛପେଇ ହୁଏ ନାହିଁ କିଛି । ତେଣୁ ଅନାୟାସ ଭବରେ ମୋ ମନର କଥା ପ୍ରକାଶ କଲି । କିଛିଟା ଭବପ୍ରବଣତା ସହିତ ।

ମଝିରେ ମଝିରେ ସ୍ୱାମୀଜୀ ଟିକେ ଉଚ୍ଚରେ ହସନ୍ତି । ସେମିତି ହସଟାଏ ହସି ସେ କହିଲେ–"ଓଃ ଏଇଥିଲାଗି ଏତେ ଚିନ୍ତା ? କଅଣ ହେଲା ବାଣପୁର ହେଲାରୁ । ସେଠି ରହିଲେ ସେ ଲୋକଙ୍କୁ ଆପଣାର କରିପାରିଲେ

ଆଉ ଚିନ୍ତା ନାହିଁ । ଦେଖିବ ଖୋର୍ଦ୍ଧା ଯାହା ବାଣପୁର ତାହା । ବରଂ ଭଲ ।" ମନେ ମନେ ହେଜିଲି । ଟିକିଏ ଶରମିଗଲା ପରି ଅନୁଭବ କଲି ।

ସାଙ୍ଗେ ସାଙ୍ଗେ କଲିଙ୍ଗ୍‌ବେଲ୍ । ନାଥିଆ ଆସି ପହଞ୍ଚିଲାରୁ ବରଦ ହେଲା, ଗ୍ଭ, ଜଳଖିଆ । ଇତ୍ୟବସରରେ ଶ୍ରୀକାନ୍ତ ବାବୁ ତାଙ୍କ ଦପ୍ତରରୁ କାମ ବିଷୟ କଥା ଭଷା ହୋଇଗଲେ । ଉପସ୍ଥିତ ସମସ୍ତେ ଗ୍ଭ, ଜଳଖିଆ ଖାଇ ଫେରିଲୁ ।

ଶ୍ରୀକାନ୍ତ ବାବୁଙ୍କ ସଙ୍ଗେ ବାଣପୁର ବିଷୟରେ ଆଉ ବିଶେଷ କଥାବାର୍ତ୍ତା ହୋଇନାହିଁ ସେଦିନ । ପରଦିନ ମୁଁ ଫେରି ଯାଇଥିଲି । ଖୋର୍ଦ୍ଧା-ଠାରେ ଏସ୍.ଡି.ଓ. ମ୍ୟାକ୍‌ଡୋନାଲଡ୍‌ଙ୍କୁ ଭେଟି ଗୁଜବଟିରୁ ସତ୍ୟତା ବିଷୟ ଜଣାଇଥିଲି । ସେ ସାମାନ୍ୟ ଆଲୋଡ଼ିତ ହୋଇ ପଡ଼ିଥିଲେ, କହିଲେ—କାହିଁ ମତେ ତ କେହି କିଛି ପଗ୍ଭରୁ ନାହାନ୍ତି । ନା' ମୁଁ କହିଥିବା ମତେ ତୁମେ ପୁଣି ଖୋର୍ଦ୍ଧା ଫେରି ଆସିବ ।

ଏଥି ନିମିତ୍ତ ମୋର ବ୍ୟଗ୍ରତା ଆଉ ବିଶେଷ ନଥିଲା କହିଲେ ଚଳେ । ମାତ୍ର ମୁଁ ନୀରବ ରହିଥିଲି । ଫେରିଗଲି ସେହିଦିନ ବାଣପୁର ।

ଲକ୍ଷ୍ୟ କଲି ବାଣପୁର ତହସିଲଦାରଙ୍କ କ୍ୱାଟରଠାରୁ ଡାକେ ବାଟ ଛଡ଼ାରେ ଅମଲାମାନଙ୍କର କ୍ୱାଟର । ମାତ୍ର ତହସିଲଦାର ଓ ସେମାନଙ୍କ ମଧ୍ୟରେ କୌଣସି ସାମାଜିକ ସମ୍ବନ୍ଧ ନଥାଏ । ଅମଲାମାନଙ୍କ ମଧ୍ୟରୁ କେତେକ ଯୁବକ । ମୋରି ବୟସର ତହସିଲଦାର ତାଙ୍କ ଘରେ ବସି ପେଗ୍ଭଗବ ଗଣୁଥାନ୍ତି । ଆଉ ସେମାନେ ଘର ଭିତରେ ରହି କଅଣ କରୁଥାନ୍ତି କେଜାଣି ? ପରଦିନ ଯୁବକ ଅମଲା କେତେଜଣଙ୍କୁ ଡକାଇ ଭଲିବଲ ଖେଳ ଆରମ୍ଭ କରିବା ସୂଚନା ଦେଲି । କି ଉତ୍ସାହ ତାଙ୍କର । ସେହିଦିନ ଭିତରେ ସବୁ ଠିକ୍‌ଠାକ୍ କରିଦେଲେ । କେତେକ ସ୍କୁଲ ପିଲା ମଧ୍ୟ ଆମ୍ଭମାନଙ୍କ ସାଙ୍ଗରେ ଖେଳରେ ଯୋଗଦେଲେ ।

ସାମାଜିକ ଜୀବନରେ ଟିକିଏ ଚେତନା, ସ୍ପନ୍ଦନ ଆରମ୍ଭ ହେଲା । ତା'ପରେ ପରେ ଡ୍ରାମା, ଏକ୍‌ସକରସନ ଇତ୍ୟାଦି । ସତକୁ ସତ ଛଅସପ୍ତାହ ଜାଗାରେ ପ୍ରାୟ ବର୍ଷେ ରହିଲି ମୁଁ ବାଣପୁରରେ । ମି: ମ୍ୟାକ୍‌ଡୋନାଲ୍‌ଡ୍‌ଙ୍କୁ ଲାଗିଗଲା ଏତକ ସମୟ ତାଙ୍କ ପ୍ରତିଶ୍ରୁତି ରକ୍ଷା କରିବା ପାଇଁ । ମାତ୍ର ବହୁକାଳ

ବିତି ଯାଇଥିଲେ ସୁଦ୍ଧା ଏବେ ମଧ୍ୟ ମୋର କେତେ ବନ୍ଧୁ ଅଛନ୍ତି ବାଣପୁରରେ । ବାଣପୁରର ସ୍ଥାନୀୟ ଉନ୍ନୟନ ଯୋଜନା ସହିତ ମୁଁ ବେଳେବେଳେ ସଂପୃକ୍ତ ହୁଏ । ସ୍ୱାମୀଜୀଙ୍କ କଥା ଅକ୍ଷରେ ଅକ୍ଷରେ ସତ ବୋଲି ମୁଁ ଅଙ୍ଗେ ଅଙ୍ଗେ ଅନୁଭବ କରିଛି ।

ବାଣପୁରରେ ଛଅ ମାସ ରହିବା ପରଦିନକର ଘଟଣା । ସେତେ-ବେଳେ ତହସିଲଦାରମାନଙ୍କର ସରକାରୀ ଜିପ୍‌ଗାଡ଼ି ନଥାଏ । ସାଇକେଲ, ବଳଦଗାଡ଼ି । ଟ୍ରେନ ଯୋଗେ ମୁଁ ଟାଙ୍ଗୀରୁ ଫେରୁଥାଏ ବାଲୁଗାଁ ଷ୍ଟେସନ । ସେଠୁ ଟାଙ୍ଗାଯୋଗେ ବାଣପୁର ଯିବି ।

ଟ୍ରେନରେ ଯେଉଁ ଡବାରେ ମୁଁ ଚଢ଼ିଲି ସ୍ୱାମୀଜୀ ସେହି ଡବାରେ ଯାଉଥାନ୍ତି କଟକରୁ ବ୍ରହ୍ମପୁର । ମତେ ଦେଖି ଖୁସି ହୋଇଯାଇ କହି ଉଠିଲେ— ଆରେ ଆସ ଆସ, କୁଆଡ଼େ ଗସ୍ତରେ ଆସିଥିଲ କି ? ଏବେ କ'ଣ ଖୋର୍ଦ୍ଧା ନା ବାଣପୁରରେ ?

ଗୋଡ଼ଧୂଳି ନେଇ କହିଲି—"ବାଣପୁରରେ ଅଛି । ଏଆଡ଼େ ଗସ୍ତରେ ଆସିଥିଲି । ଫେରୁଛି ବାଣପୁର । ବାଲୁଗାଁରେ ଓହ୍ଲାଇବି ।"

"କାହିଁ ତୁମ ମନରେ କିଛି ଅଶାନ୍ତି ଥିଲପରି ଲାଗୁନାହିଁ" ହସି ହସି ଆଖିମିଟିକା ମାରି କହିଲେ ସ୍ୱାମୀଜୀ ।

"ଅଶାନ୍ତିର ମୂଳକୁ ତ ଆପଣ ସେଦିନ ମନରୁ କାଢ଼ି ଦେଇଥିଲେ ସ୍ୱାମୀଜୀ । ପ୍ରକୃତ ପକ୍ଷେ ବାଣପୁର କାମ କରିବା ପାଇଁ ପ୍ରକୃଷ୍ଟତର କ୍ଷେତ୍ର ।" ନମ୍ରତାର ସହିତ କହିଲି ମୁଁ ।

"କିପରି" ସ୍ୱାମୀଜୀଙ୍କ ବାଳ ସୁଲଭ ପ୍ରଶ୍ନ ।

"ବାଣପୁର ନିଶ୍ଚିତ ଭାବରେ ଖୋର୍ଦ୍ଧାଠାରୁ ବହୁ ଦିଗରେ ପଛରେ । ଏଠା ମାଳ ଅଞ୍ଚଳରେ ଆଦିବାସୀମାନଙ୍କ ଅବସ୍ଥା ଆଦୌ ଭଲ ନୁହେଁ । ଗମନାଗମନର ସୁବିଧା କମ । ଚାଷ ପାଇଁ ଜଳସେଚନ ବ୍ୟବସ୍ଥା ଆଦୌ ନାହିଁ କହିଲେ ଚଳେ । ଗାଁମାନଙ୍କରେ ପିଇବା ପାଣିର ଅଭାବ । କରି ବସିଲେ ବହୁତ କାମ ।" ବୁଝାଇ କହିଥିଲି ମୁଁ ।

"ମୋର ତ ସେଇ ଧାରଣା ଯାହା ମୁଁ ତୁମକୁ ସେଦିନ କହିଥିଲି । ମୁଁ ଖୁସି ତୁମେ ବାଣପୁରକୁ ଖରାପ ମଣିନାହିଁ"—ସ୍ୱାମୀଜୀଙ୍କ ମୁହଁରେ ପ୍ରସନ୍ନତାର ଚିହ୍ନ ।

ଅପରାହ୍ଣ ୫ଟା ସମୟ, ଶୀତ ଦିନ, ସୂର୍ଯ୍ୟାସ୍ତ ହେବାକୁ ଡେରି ନାହିଁ । ଘଲେରୀ ଶିଖରରେ ସୂର୍ଯ୍ୟ ପହଞ୍ଚୁଥାନ୍ତି । ଟ୍ରେନ୍ ଚାଲିଥାଏ । କିଛି ସମୟ ପରେ ସ୍ୱାମୀଜୀଙ୍କ ଚିର ସହଚର ନାଥିଆ ପହଞ୍ଚି କହିଲା, "ଖାଇବା ବେଳ ହୋଇଗଲା ।" "ଆଣ" ବୋଲି ତାକୁ କୋମଳ ଭାବରେ ସଂକ୍ଷିପ୍ତ ନିର୍ଦ୍ଦେଶ ଦେଲେ ସ୍ୱାମୀଜୀ ।

ଫାଷ୍ଟକ୍ଲାସ୍ ଡବାରେ ସେ ଦିନ ସ୍ୱାମୀଜୀଙ୍କ ଛଡ଼ା ଅନ୍ୟ ଯାତ୍ରୀ କେହି ନ ଥାନ୍ତି । ନାଥିଆ ସ୍ୱାମୀଜୀଙ୍କ ପାଖରେ ରହି ତାଙ୍କର ମନୋଭାବ ସହିତ ପରିଚିତ । ଅଳ୍ପ ସମୟ ପରେ ଫେରି ଆସି ଗୋଟିଏ ଥାଳି ମୋ ସାମନାରେ ଆଉ ଗୋଟିଏ ସ୍ୱାମୀଜୀଙ୍କ ସାମନାରେ ରଖିଦେଲା ।

ସ୍ୱାମୀଜୀଙ୍କ ରାତ୍ରି ଭୋଜନ ପାଇଁ ଖାଦ୍ୟ ଘରୁ ପ୍ରସ୍ତୁତ ହୋଇ ଆସି-ଥାଏ । ସରୁ ଚକୁଳି କେତୋଟି, ସଜ ଭଜା ଖଇ, ଦୁଇଟି ଲେଖାଏଁ ଲଡ଼ୁ, ବାଟିରେ ବାଟିଏ ଲେଖାଏଁ ଦୁଧ ।

"ଏଇ ମୋର ଦୈନନ୍ଦିନ ରାତ୍ରି ଭୋଜନର ଖାଦ୍ୟ । ଆସ ଟିକିଏ ଚାଖ, ପିଲା ଲୋକ ତୁମକୁ ଭଲ ଲାଗିବ କି ନା"— ସ୍ୱାମୀଜୀଙ୍କ ସଶ୍ରଦ୍ଧ ନିମନ୍ତ୍ରଣ ।

ବଡ଼ ସଂକୋଚ ଲାଗୁଥାଏ ମତେ । ସ୍ୱାମୀଜୀଙ୍କ ପାଇଁ ଆସିଥିବା ରାତ୍ରି ଭୋଜନ ସାମଗ୍ରୀରେ ଭାଗୀଦାର ହୋଇ ବସୁଛି । ମାତ୍ର ମୁହଁ ଖୋଲି କହିବାର ଭରସା ପାଇଲି ନାହିଁ । ଏତେ ସ୍ନେହକୁ କିଏ ହତାଦର କରି ପାରେ କି ?

ବାଲୁଗାଁ ଷ୍ଟେସନ୍‌ରେ ସ୍ୱାମୀଜୀଙ୍କ ପାଦଧୂଳି ନେଇ ଓହ୍ଲାଇ ଗଲି । ସବୁ ଦିନ ପରି ସହାସ୍ୟ ବଦନ, ଉଦାର ପ୍ରେମ ଭାବ ସହ ସେ ମତେ ବିଦାୟ ଦେଇଥିଲେ ।

ଜୀବନ ତରଙ୍ଗରେ ଇତସ୍ତତଃ ହୋଇ ଅନେକ ବର୍ଷଯାଏ ସ୍ୱାମୀଜୀଙ୍କ ସାକ୍ଷାତ ପାଇ ପାରି ନଥିଲି । ଯେତେବେଳେ ସ୍ୱାମୀଜୀଙ୍କ ସ୍ୱାସ୍ଥ୍ୟ ହାନୀ ଘଟିଲା ଭିଶୋଇ ଶ୍ରୀକାନ୍ତବାବୁ କେବେ କେବେ ଖବର ଦିଅନ୍ତି ତାଙ୍କ ସ୍ୱାସ୍ଥ୍ୟ ଅବସ୍ଥା । କଟକ ଗଲେ କେବେ କେବେ ଶ୍ରୀକାନ୍ତବାବୁଙ୍କ ସଙ୍ଗେ ସ୍ୱାମୀଜୀଙ୍କୁ ଦେଖି ଆସିବାକୁ ଯାଇଛି । ସେତେବେଳକୁ ତାଙ୍କର ସ୍ୱାସ୍ଥ୍ୟର ଅବନତି ଆରମ୍ଭ ହୋଇ ଯାଇଥାଏ ।

୧୯୭୧ ମସିହାରେ ସ୍ୱାମୀଜୀଙ୍କ ଦେହାବସାନ ପୂର୍ବରୁ ବହୁକାଳ ପର୍ଯ୍ୟନ୍ତ ସେ ଶଯ୍ୟାଶାୟୀ ହୋଇ ରହିଥିଲେ । ସ୍ୱାମୀଜୀଙ୍କ ପରି ଜଣେ ହୃଦୟବାନ୍, ନିର୍ମଳମନା, ଅଜାତଶତ୍ରୁ ମହାନ୍ ବ୍ୟକ୍ତିଙ୍କୁ ଅନ୍ତିମ ସମୟରେ କାହିଁକି ଏତେ ଦୂର ମାନସିକ ଯନ୍ତ୍ରଣା ଓ ଶାରୀରିକ ପୀଡ଼ା ଭୋଗିବାକୁ ପଡ଼ିଥିଲା— ଭାବିଲେ କୂଳ କିନାରା ମିଳେ ନାହିଁ ।

ଥରେ କୌତୂହଳ ବଶତଃ ଜଣେ ବିଶିଷ୍ଟ ଆଧ୍ୟାତ୍ମିକବାଦୀଙ୍କୁ ଭେଟିବା ଅବସରରେ ଏହି ପ୍ରଶ୍ନ ପଚାରିଥିଲି । ସେ ବୁଝାଇ କହିଥିଲେ– "ବୁଝିଲ, ତାଙ୍କର ଯାହାକିଛି ଭୋଗିବାର ଥିଲା ଭୋଗିଦେଇ ଗଲେ । ମୋକ୍ଷ ଲାଭ ହେଲା । ଏଥିରେ ଦୁଃଖିତ ବା ବିସ୍ମିତ ହେବାର କିଛି ନାହିଁ ।"

ସେ ଯାହା ହେଉ, ସ୍ୱାମୀଜୀ ତାଙ୍କର ଛଳନା ହୀନତା, ସାର୍ବଜନୀନ ପ୍ରେମଭାବ ଓ ହେତୁ ରହିତ ପରହିତ ପ୍ରବଣତା ପାଇଁ ପ୍ରାତଃ ସ୍ମରଣୀୟ ହୋଇ ରହିଛନ୍ତି ଏବଂ ରହିବେ ।

—o—

ଲୁଇସ୍ ରୋଡ୍, ଭୁବନେଶ୍ୱର

# ଅନ୍ତିମ ଦିନର ଶେଷକଥା

## ଶ୍ରୀ ରବୀନ୍ଦ୍ର ନାଥ ମହାନ୍ତି

୧୯୫୮ ମସିହା ଫେବୃଆରୀ ୨୩ ତାରିଖ । ଏହି ଦିନ ଗୋଟିଏ କର୍ମମୁଖର ଜୀବନର ଅବସାନ ହେଲା । ପ୍ରତିଦିନ ଅଗଣିତ ଲୋକ ନିଜ ନିଜର ଅଭିନୟ ସାରି ମରଦେହ ତ୍ୟାଗ କରୁଛନ୍ତି । ତାଙ୍କ ଭିତରେ ବାଛି-ହୋଇ ଯାନ୍ତି ଅଳ୍ପ କେତେକ ଯେଉଁମାନେ ଦେହଧରି ଥିବାବେଳେ ମନେରଖିବା ଭଳି କିଛି କରିଥାନ୍ତି ଅନ୍ୟମାନଙ୍କ ପାଇଁ । ଆଜି ପ୍ରାୟ ୨୮ ବର୍ଷପରେ ବହୁତ ନିବିଡ଼ ଭାବରେ ମନେ ପକାଉଛୁ ଜଣଙ୍କୁ ଯାହାଙ୍କର ଦେହାବସାନ ହୋଇ-ଥିଲା ସେହିଦିନ । ନୂଆଦିଲ୍ଲୀର ଫିରୋଜଶାହା ରୋଡ୍‌ରେ ଥିବା ୫ ନମ୍ବର କୋଠି । ୩୦।୪୦ ବର୍ଷ ତଳେ ଯେଉଁ ଓଡ଼ିଆମାନଙ୍କର ରାଜଧାନୀ ଦିଲ୍ଲୀକୁ ଯିବା ଆସିବା ଥିଲା ସେମାନଙ୍କ ଭିତରୁ ଅଧିକାଂଶଙ୍କର ସୁପରିଚିତ ଏହି ଘରଟି । ଦିଲ୍ଲୀରେ କେଉଁଠି ଓହ୍ଲାଇବାର ବା ରହିବାର ସୁବିଧା ନ ମିଳିଲେ ଏଠି ପହଞ୍ଚିଗଲେ ଠାବ ମିଳିଯାଏ । ଏହି କୋଠିରେ ବହୁ ବର୍ଷ ରହିଥିଲେ ଦିଲ୍ଲୀ ପାର୍ଲାମେଣ୍ଟରେ ଓଡ଼ିଶାର ପ୍ରତିନିଧି ଭୁବନାନନ୍ଦ ବାବୁ ଯାହାଙ୍କୁ ଲୋକେ ବି. ଦାସ ନାଁରେ ବେଶୀ ଚିହ୍ନିଥିଲେ । ଯେଉଁଦିନ ପହଞ୍ଚନ୍ତୁ ସେଠି — ବି.ଦାସ ଥାଆନ୍ତୁ କି ନାହିଁ କେତେଜଣ ଓଡ଼ିଆ ଆଗନ୍ତୁକଙ୍କୁ ଦେଖିବାକୁ ମିଳେ । ଛାତଯାଏ ଲାଗିଥିବା ଗଦା ଗଦା ପାର୍ଲ୍ୟାମେଣ୍ଟ ବହି କାଗଜ ଭିତରେ ଚୌକି ଟେବୁଲ ଆଡ଼େଇ — ସପ ସତରଞ୍ଜି ପାରି ଶୋଇଯାନ୍ତି । ୫ ନମ୍ବର କୋଠିର ଦ୍ୱାର ସବୁବେଳେ ଓଡ଼ିଆମାନଙ୍କ ପାଇଁ ଖୋଲା ରହିଥାଏ ।

ମୁଁ ଦିଲ୍ଲୀରେ ଭାରତ ସରକାରଙ୍କର ଅଫିସରେ ସେତେବେଳେ କାମ କରୁଥାଏ । ବି. ଦାସ ଦିଲ୍ଲୀରେ ଥିବା ସମୟରେ ମୁଁ ଓ ଆଉ କେତେ-ଜଣ ଓଡ଼ିଆ ପ୍ରାୟ ପ୍ରତ୍ୟହ ଥରେ ବା ଦୁଇଥର ଏହି ୫ ନମ୍ବର କୋଠିକୁ ଯାଉ—ଅଫିସକୁ ଯିବା ବାଟରେ ବା ଅଫିସ ଫେରନ୍ତି । ଗପ-ଜଳଖିଆ ନ

ଝୁଆଇ ସେ କାହାକୁ ଛାଡ଼ନ୍ତି ନାହିଁ । ସ୍ନେହବୋଳା ତାଙ୍କର ଅନୁରୋଧ ଏଡ଼ାଇ ଦେବା ଆଦୌ ସମ୍ଭବ ହୁଏ ନାହିଁ ।

ସବୁ ଦିନ ପରି ୨୩ ତାରିଖ ସକାଳେ ମୁଁ ପହଞ୍ଚି ଦେଖେ ବି. ଦାସ ଚୁପ୍ ହୋଇ ବସିଛନ୍ତି । ମନେହେଲା ଖୁବ୍ ଉତ୍ତେଜିତ ଅଛନ୍ତି । କ'ଣ ଯେପରି ଭାବୁଥାନ୍ତି । ତାଙ୍କର ସ୍ୱଭାବ ସୁଲଭ ଖୋଲା ହସ ଓ ଦର ଦର କଣ୍ଠରେ ସ୍ୱାଗତ ଆହ୍ୱାନ ନାହିଁ । ମନେହେଲା ଏହା ଅତି ଅସ୍ୱାଭାବିକ । ମୁଁ ଆଗକୁ ଯାଇ ପାରିଲି ନାହିଁ । ତାଙ୍କର ନଜର ଏଡ଼ାଇ ଭିତରକୁ ଯାଇ ମାଉସୀ ଶ୍ରୀମତୀ ରୁକ୍‌ମିଣୀ ଦେବୀଙ୍କୁ ପଚାରିଲି, "ଆଜି କଣ ହୋଇଛି କି ମଉସା ଏତେ ବିମନା କାହିଁକି ।" ମାଉସୀ ଚୁପି ଚୁପି କହିଲେ, "କଟକରୁ କଣ ଫୋନ ପାଇଛନ୍ତି ଯେ ତାଙ୍କୁ ଓଡ଼ିଶା କଂଗ୍ରେସର କର୍ମକର୍ତ୍ତାମାନେ ଆସନ୍ତା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ବାଛୁନାହାନ୍ତି ।" ଏତିକିବେଳେ ବି. ଦାସ ଜାଣିପାରିଲେ ଯେ କିଏ ଜଣେ ଆସିଛି ଓ ଡାକିଲେ । ମୁଁ ତାଙ୍କ ସାମନାକୁ ଯାଇ ପ୍ରଣାମ କଲି ଓ ମୋତେ ପାଖ ଚୌକିରେ ବସିବାକୁ କହିଲେ ।

"ରବିବାବୁ । ବି. ଦାସ କଣ ଓଡ଼ିଶା ପାଇଁ କିଛି କରିନାହିଁ ବା କରୁନାହିଁ ? ଓଡ଼ିଶା ମୋତେ ଆଉ ଚାହୁଁନାହିଁ ।" କିଛି କ୍ଷଣ ଚୁପ୍ ରହି ପୁଣି ଏହା କହିଲେ । ମୁଁ ବା କ'ଣ ଉତ୍ତର ଦେବି । ଚୁପ୍‌ହୋଇ ବସି-ଥାଏ । ଏହିପରି ୩।୪ ଥର କହିବା ପରେ ମୁଁ କହିଲି, "ନିଷ୍ପତ୍ତି ତ କଂଗ୍ରେସର ଉପର ମହଲରେ—ଦିଲ୍ଲୀରେ—ସବୁବେଳେ ହୋଇଥାଏ । ପ୍ରଦେଶର କଂଗ୍ରେସକୁ ପଚରାଯାଏ ସତ କିନ୍ତୁ ସେଠାରେ ପ୍ରାୟ ସମସ୍ତେ ନିଜ ନିଜର ସ୍ୱାର୍ଥ, ଈର୍ଷା, ଦ୍ୱେଷରେ ଏପରି ଅନ୍ଧହୋଇ ପଡ଼ନ୍ତି ଯେ ଦେଶର ସମୂହ କଲ୍ୟାଣ ଓ ସ୍ୱାର୍ଥକୁ ଭୁଲିଯାନ୍ତି । କିନ୍ତୁ ଏଠି ଦିଲ୍ଲୀରେ ନିରପେକ୍ଷ ବିଚାର ହୋଇ ଠିକ୍ ଓ ଯୋଗ୍ୟ ଲୋକଙ୍କୁ ବଛାଯାଏ । ଏହା ଆମେ ଓ ଆପଣଙ୍କର ସଙ୍ଗଠନର ବାହାର ଲୋକେ — ବିଶ୍ୱାସ କରୁ । ଏଠିକାର ନେତାମାନେ —ଆପଣଙ୍କର ବନ୍ଧୁ ଓ ଆପଣ କଣ କରିଛନ୍ତି ଓ କରୁଛନ୍ତି ସେମାନେ ଭଲକରି ଜାଣନ୍ତି । ସେମାନେ ଆପଣଙ୍କ ପ୍ରତି ଏପରି ଅନ୍ୟାୟ ହେବାକୁ ଦେବେନାହିଁ ।" କିଛି ସମୟ ଚୁପ୍ ରହି ସେ କହିଲେ, "ଓଡ଼ିଶା ଲୋକେ

ମୋତେ ଯେତେବେଳେ ଭୁଲିଗଲେ ମୁଁ ଏଠା ଲୋକଙ୍କଠାରୁ କ'ଣ ଆଶା କରିବି ? ଆମ ସଂଗଠନରର ନିୟମ — ତଳୁ — ପ୍ରଦେଶରୁ ପ୍ରଥମ ସୁପାରିଶ ଆସିବା ଦରକାର ।"

'ଗ୍' ଖାଇଲି । ମନେହେଲା ତାଙ୍କର ମନ ପୂରା ଭାଙ୍ଗିଯାଇ ଥାଏ । ବର୍ଷ ବର୍ଷ ଧରି ଅବିଚ୍ଛିନ୍ନ ଭାବରେ ଦେଶର ସର୍ବୋଚ୍ଚ ମହଲରେ ତୁଙ୍ଗ ନେତା ଓ ବଡ଼ ବଡ଼ ଲୋକମାନଙ୍କ ମେଳରେ ରହି, ନାନା କମିଟୀର ସଭ୍ୟ ହୋଇ, ଜଣେ ନିରପେକ୍ଷ, ନିର୍ଭୀକ ଓ ଟାଣୁଆ ଲୋକ ଭାବରେ ସୁପରିଚିତ— ଏହି ବୟସ୍କ ଲୋକଟିକୁ ଏପରି ବିଷାଦ ପୂର୍ଣ୍ଣ ମୁଁ ଆଗରୁ ଦେଖି ନ ଥିଲି । ସେ ଜଣେ ରକ୍ତ ଚାପର ରୋଗୀ । ଉଦ୍‌ବେଗ ଓ ଉତ୍ତେଜନାରେ ତାଙ୍କର ମୁହଁ ଲାଲ ହୋଇଯାଇ ଥାଏ । ଅଗଣିତ ମନ୍ତ୍ରୀ ଓ ଭାରତ ସରକାରଙ୍କର ବଡ଼ ଛୋଟ ପ୍ରଶାସନିକ କର୍ତ୍ତାମାନେ ଦୀର୍ଘ ୩୬ ବର୍ଷ ଧରି ତାଙ୍କୁ Public Accts. କମିଟୀର ସଭାପତି ରୂପେ ଦେଖିଆସିଛନ୍ତି । ସେମାନେ ମଧ୍ୟ ଏହି ବେଳରେ ତାଙ୍କୁ ଦେଖିଥିଲେ ଭାବିପାରି ନ ଥାନ୍ତେ ଯେ ସଦା ହସ ହସ, ଜ୍ଞାନୋଜ୍ଜ୍ୱଳ, ଗାଢ଼ ଆତ୍ମ ବିଶ୍ୱାସ ଭିତର ଦେଇ ଅନ୍ୟମାନଙ୍କ ମନରେ ନିରପେକ୍ଷ ବିଚାରର ପରମ ବିଶ୍ୱାସ ଜନ୍ମାଉଥିବା ସେହି ବି. ଦାସଙ୍କର ମୁଖ ମଣ୍ଡଳ ଏତେ ବିଷଣ୍ଣ ଓ ମଳିନ କାହିଁକି ଓ କିପରି ହେଲା । କିଛି ସମୟ ପରେ ମୁଁ ସେଠାରୁ ଉଠି ଚାଲି ଆସିଲି ।

ପୁଣି ଓପରଓଳି ପ୍ରାୟ ୫ଟା ବେଳକୁ ମୁଁ ଓ ମୋର ସ୍ତ୍ରୀ ତାଙ୍କ ଘରକୁ ଗଲୁ । ସେତେବେଳକୁ ସେ ଖଟରେ ଶୋଇଥାନ୍ତି କିନ୍ତୁ ଚେଇଁଥାନ୍ତି । ମୋତେ ଦେଖି ପାଖକୁ ଡାକି କହିଲେ, "ରବିବାବୁ ! ମୋ ପାଇଁ ଟିକେ କଷ୍ଟ କରିବେ ? ମୁଁ ଖଣ୍ଡେ ଚିଠି ଲେଖିଛି ଧେବର ଭାଇଙ୍କ ପାଖକୁ । ଧେବର ଭାଇ ଦିଲ୍ଲୀରେ Kings way Camp ରେ ଅଛନ୍ତି । ତାଙ୍କ ହାତରେ ଏ ଚିଠି ଆପଣ ନିଜେ ଦେଇଆସି ପାରିବେ ?" ଚିଠି ନେଇ, ମୋ ଗାଡ଼ିରେ ମୁଁ ସାଙ୍ଗେ ସାଙ୍ଗେ ବାହାରିଗଲି । Kings way Camp ତାଙ୍କ ଘରଠାରୁ ପ୍ରାୟ ୧୮/୨୦ କିଲୋମିଟର । ସେଠି ପହଂଚି ଧେବର ଭାଇଙ୍କୁ ଚିଠି ଖଣ୍ଡ ଦେଇ ଫେରୁ ଫେରୁ ସଂଧ୍ୟା ହୋଇଗଲା । ୫ ନମ୍ବର ଫିରୋଜ ଶାହା ରୋଡ୍‌ରେ ପହଂଚି ଦେଖିଲୁ— ଶ୍ରୀଯୁକ୍ତ ଦାସ ଅଜ୍ଞାନ ହୋଇ ପଡ଼ିଛନ୍ତି

ବିଛଣାରେ । ମୁଣ୍ଡରେ ରକ୍ତସ୍ରାବ ହୋଇ ନାକ ବାଟେ ରକ୍ତ ବାହାରୁଥାଏ । ଘରର ସମସ୍ତେ ଦୁଃଖରେ ମ୍ରିୟମାଣ ହୋଇ ଅତ୍ୟନ୍ତ ଉଦ୍‌ବେଗରେ ବସିରହି-ଥାନ୍ତି । ଡାକ୍ତର ଆସି ଦେଖିଗଲେଣି—ଚିକିତ୍ସା ଚାଲିଥାଏ । ଶୁଣିଲି ମୁଁ ଚିଠି ନେଇ ଚାଲିଯିବା ପରେ ପରେ— ଗଲେ ପାଇଖାନାକୁ । ସେଠାରେ ହଠାତ୍ ଅଜ୍ଞାନ ହୋଇ ପଡ଼ିଗଲେ ଓ ରକ୍ତସ୍ରାବ ଆରମ୍ଭ ହୋଇଗଲା । ଧରା ଧରି କରି ତାଙ୍କୁ ଆଣି ବିଛଣାରେ ଶୋଇଦିଆ ଯାଇଥାଏ ।

ଜ୍ଞାନ ଆଉ ଫେରିଲା ନାହିଁ, ରାତିସାରା ବହୁତ ଚେଷ୍ଟା କରାଗଲା କିନ୍ତୁ ସବୁ ବିଫଳ ହୋଇଗଲା । ପାହାନ୍ତିଆଁକୁ ତାଙ୍କ ପ୍ରାଣବାୟୁ ଉଡ଼ିଗଲା । ମୁଁ ତାଙ୍କର ଶେଷ ଇଚ୍ଛା ଅନୁଯାୟୀ ଧେବର ଭାଇଙ୍କୁ ତାଙ୍କ ଚିଠି ଦେଇଆସି-ପାରିଲି— ଏହା ତାଙ୍କୁ ଜଣାଇ ପାରିଲି ନାହିଁ । ତାଙ୍କର ସେହି ଶେଷ କଥା ସବୁ ଦିନକୁ ରହିଗଲା :

"ବି. ଦାସ କଣ ଓଡ଼ିଶା ପାଇଁ କିଛି କରି ନାହିଁ ଓ କରୁ ନାହିଁ । ଆଜି ଓଡ଼ିଶା ବି. ଦାସକୁ ଚାହିଁଲା ନାହିଁ ।"

୨୪ ତାରିଖ ଦିନ ଏମ୍.ପି, ମନ୍ତ୍ରୀ, ଶିଳ୍ପପତିମାନଙ୍କ ସମେତ ଅଗଣିତ ନରନାରୀ ଆସିଥିଲେ ଶେଷ ଦର୍ଶନ ପାଇଁ । ପଣ୍ଡିତ ନେହରୁ ନୀରବରେ ତାଙ୍କ ଶଯ୍ୟା ପାର୍ଶ୍ୱରେ ବହୁତ ସମୟ ଠିଆ ହୋଇ ରହି ଫେରିଲେ । ଏମାନଙ୍କ ଭିତରୁ ଅନେକେ ପଚାରିଲେ ହଠାତ୍ କଣ ଏପରି ହେଲା ତାଙ୍କର ? ତାଙ୍କର ଏହି ଶେଷ କଥା ଦୁଇପଦ ସେମାନଙ୍କୁ ଜଣାଇଲି । ଏହି 'ଦୁଇପଦ' ଭିତରେ ଅନେକ କିଛି ସେ କହିଗଲେ ।

—୦—

# ସ୍ମୃତି ଚାରଣ

## ଡାକ୍ତର ବୀଣା ଦେଇ

ପୂଜ୍ୟ ✓ ଭୁବନାନନ୍ଦ ଦାସ ଓ ପୂଜ୍ୟ ✓ ସ୍ୱାମୀ ବିଚିତ୍ରାନନ୍ଦ ଦାସ (ନବ, କୁଶ) ଆମ ଦାଦି ✓ ପୂଜ୍ୟ ବୀରକିଶୋର ରାୟଙ୍କର ସହପାଠୀ ଥିବାରୁ ଆମେ ଭାଇଭଉଣୀ ତାଙ୍କୁ ଦାଦି ଓ ତାଙ୍କ ସହଧର୍ମିଣୀମାନଙ୍କୁ 'ଖୁଡ଼ୀ' ବୋଲି ସମ୍ବୋଧନ କରୁଥିଲୁ । ହେଲେ ଓଡ଼ିଶାରେ ଥିବା ସମୟରେ ସେମାନଙ୍କ ସହିତ ଘନିଷ୍ଠତା ହେବାର ସୁଯୋଗ ହୋଇ ନ ଥିଲା ।

ଜ୍ୟୋତ୍ସ୍ନା ଓ ମୁଁ ଲେଡି ହାଡ଼ିଞ୍ଜ ମେଡିକାଲ କଲେଜ, ଦିଲ୍ଲୀ ପଢ଼ିବାକୁ ଯାଇଥାଉଁ । ପ୍ରଥମ ଥର ପାଇଁ ଆତ୍ମୀୟସ୍ୱଜନଙ୍କୁ ଛାଡ଼ି ବିଦେଶରେ ବଡ଼ ଅସହାୟ ଲାଗୁଥାଏ । ଘର ପାଇଁ ପ୍ରାଣ ବ୍ୟାକୁଳ ହେଉଥାଏ । ଏହିପରି ସମୟରେ ଦିନେ ଦାଦି ଭୁବନାନନ୍ଦ ଓ ଖୁଡ଼ୀ ରୁକ୍ମିଣୀ ଦେବୀ ଆମ କଲେଜକୁ ଆସି ଭିଜିଟର ବହିରେ ନାମ ଲେଖି ଦରଓ୍ୱାନ୍ ହାତରେ ଆମପାଖକୁ ପଠାଇ-ଦେଲେ । ଆମେ ସନ୍ଧ୍ୟା ଚା'ଜଳଖିଆ ଖାଇ ହାତରେ ର୍‌ୟାକେଟ୍ ଧରି ଖେଳ-ପଡ଼ିଆକୁ ବାହାରିଛୁ ଦରଓ୍ୱାନ୍ ଭିଜିଟର ବହିଟିଆମ ହାତକୁ ବଢ଼ାଇ ଦେଲା । ଆମେ ଆଶ୍ଚର୍ଯ୍ୟ ! ପ୍ରାୟ ସବୁ ପିଲାଙ୍କର ଭିଜିଟର ଆସନ୍ତି ମାତ୍ର ଆମର ଏ କେତେମାସ ଭିତରେ, ଘରୁ ଆସିଲା ଦିନୁ, କେହି ଭିଜିଟର ଆସିନାହାନ୍ତି ! ସୁଦୂର ଓଡ଼ିଶାରୁ କିଏ ବା ଆସିପାରେ ଭାବି ପାରି ନ ଥିଲୁ । କଂପିତ ହାତରେ ଆନନ୍ଦ କୌତୂହଳ ହୋଇ ଭିଜିଟର ବହିଟି ଖୋଲି ଦେଖିଲୁ "ଶ୍ରୀମତୀ ଓ ଶ୍ରୀ ଭୁବନାନନ୍ଦ ଦାସ, ଏମ୍.ପି." । ର୍‌ୟାକେଟ୍‌କୁ ସେହିଠାରେ ଫୋପାଡ଼ି ଦେଇ ଦୁଇଜଣଯାକ ଅଣନିଃଶ୍ୱାସୀ ହୋଇ ଭିଜିଟର ରୁମ୍‌କୁ ଧାଇଁଲୁ । ତାଙ୍କ ନିକଟରେ ପହଞ୍ଚିବା ମାତ୍ରେ ଖୁଡ଼ୀ କୁଣ୍ଢାଇ ପକାଇ କହିଲେ— "ଭଲ ଅଛ ମା' ?" ଆମ ଆଖିରେ ଲୁହ, ପାଟିରୁ କଥା ବାହାରୁ ନାହିଁ । ଦାଦି କହିଲେ— "ଦେଖ ଦେଖ, ଓଡ଼ିଆଣୀ କେମିତି କାନ୍ଦୁଛନ୍ତି ! ଆରେ, ଉଚ୍ଚଶିକ୍ଷା ପାଇଁ, ଡାକ୍ତରୀ ପଢ଼ିବା ପାଇଁ ବିଦେଶ ଆସିଛ । ଓଡ଼ିଶାରୁ ଆଉ ଏମିତି କିଏ ଆସି ପାରିଛି ? ଚାଲ ଚାଲ ଆମ ଘରଆଡ଼େ ବୁଲି ଆସିବ ।" ମୁଁ କହିଲି, "ଓ୍ୱାର୍ଡେନଙ୍କ ଅନୁମତି

ଦରକାର ।" "ବେଶ୍ ତ, ଅନୁମତି ନେଇଆସ ।" ଖୁଡ଼ୀ କହିଲେ, "ସେ ମୋ ପାଖେ ଥାନ୍ତୁ । ତମେ ଫୋନ୍ କରି ଅନୁମତି ନେଇନିଅ ।" ତାହା ହିଁ ହେଲା । ସେ ହେଉଛି ସ୍ୱାଧୀନତା ସଂଗ୍ରାମର ଦିନ, ୧୯୨୭-୨୮ ମସିହା । ସାହେବ ସରକାରୀ କର୍ମଚାରୀମାନେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଅତ୍ୟନ୍ତ ସମୀହ କରୁଥିଲେ, ଭୟ ମଧ୍ୟ । ସାଙ୍ଗେ ସାଙ୍ଗେ ଅନୁମତି ମିଳିଗଲା । "ରାତି ୯ଟା ପୂର୍ବରୁ, ରୋଲ୍‌କଲ୍ ବେଳକୁ ଯେପରି ଫେରିଆସନ୍ତି ।" ଆମେ ଦାଦି, ଖୁଡ଼ୀଙ୍କ, ସଙ୍ଗେ ତାଙ୍କ ଘରକୁ ଗଲୁ । ସେଠାରେ ଖୁଡ଼ୀ ସରୁଚକୁଳି, ଛୁଞ୍ଚିପତ୍ର, କ୍ଷୀରୀ-ତରକାରି ଆମପାଇଁ କରି ରଖିଲେ । ଅତ୍ୟନ୍ତ ତୃପ୍ତିସହ ଖାଇଲୁ ଓ ଅନେକ ଗପସପ ହେଲା । ଖୁଡ଼ୀ କହିଲେ, "ଛୁଟିସବୁ ମୋ ପାଖେ କଟାଇ ଯାଉଥିବ ।" ଦାଦି କହିଲେ, "ସେମାନେ ପାଠପଢ଼ିବାକୁ ଆସିଛନ୍ତି ନା ତମପାଖେ ଶୁଖୁଆ ପଖାଳ ଖାଇବାକୁ ଆସିଛନ୍ତି ? ଡାକ୍ତରୀ ପାଠ କେତେ କଷ୍ଟ ଜାଣିଛ ନା ? ସେ ଭଲକରି ପାଶ୍‌କରି ଓଡ଼ିଶାର ନା ରଖିବେ ନା ସବୁଛୁଟି ତମପାଖେ କଟେଇବେ ?" ଖୁଡ଼ୀ କହିଲେ, "ନାନା ସବୁଛୁଟି ନ କଟାନ୍ତୁ ମଝିରେ ସୁବିଧା-ନୁସାରେ ମୋ ପାଖେ ଦୁଇଚାରିଘଣ୍ଟା କଟାଇଯାନ୍ତୁ । ବିଦେଶରେ ପିଲାଗୁଡ଼ା ଏକା ଅଛନ୍ତି ମୁଁ ଖୁଡ଼ୀଟାଏ ଥାଉଁ ଥାଉଁ ମୋ ପାଖକୁ ନ ଆସିଲେ ତାଙ୍କର କଷ୍ଟ ହେବନି ?" ହେଲେ ଆମେ ନିଜତରଫରୁ କେବେ ଯାଇନୁ । ତାଙ୍କର ସୁବିଧାନୁସାରେ ଖୁଡ଼ୀ, ତାଙ୍କ ଭାଇ ଅଭିମନ୍ୟୁକୁ ପଠାଇ ଆମକୁ ନେଇଯା'ନ୍ତି ଓ ଫେରିବା ବେଳେ ସନ୍ଧ୍ୟାହୋଇ ଯାଇଥିଲେ ନିଜେ କାର୍‌ରେ ଆଣି ହଷ୍ଟେଲରେ ପହଞ୍ଚାଇ ଦେଇଯା'ନ୍ତି ।

ଓଡିଶାର ସ୍ୱାଧୀନତା ସଂଗ୍ରାମୀମାନେ ଦିଲ୍ଲୀ ଆସିଲେ ତାଙ୍କ ଘରେ ସେମାନଙ୍କର ରହଣି ହୁଏ ଓ ତାଙ୍କୁ ଭେଟିବାକୁ ଆମକୁ ଡକରା ପଡ଼େ । ପାର୍ଲିଆମେଣ୍ଟର କୌଣସି ଭୋଜିହେଲେ ଆମକୁ ନିମନ୍ତ୍ରଣ ହୁଏ ଓ ଭୁବନାନନ୍ଦ ଦାଦି ଏମ୍. ପି. ମାନଙ୍କ ସହିତ ଆମର ସଂପର୍କରେ ପରିଚୟ କରାଇ ଦିଅନ୍ତି. "ମୋ ଝିଆରୀ, ମେଡିକାଲ ଷ୍ଟୁଡେଣ୍ଟ ।" ରୁକ୍ମିଣୀ ଖୁଡ଼ୀ ସବୁ ଭୋଜିରେ ଯୋଗ ଦିଅନ୍ତି ହେଲେ ବାହାର ରନ୍ଧା ଖାଆନ୍ତି ନାହିଁ । ସେ ସବୁରି ସହିତ ନିର୍ଭୁଲ ହିନ୍ଦି କିମ୍ବା ବଙ୍ଗଳାରେ କଥାବାର୍ତ୍ତା କରି ସଭଟିକୁ ବେଶ ଜମାଇ ରଖନ୍ତି । ଆମକୁ ଦୁଇଜଣଯାକ ଦିଲ୍ଲୀର ସବୁ ଦର୍ଶନୀୟ ସ୍ଥାନମାନଙ୍କୁ ନେଇ

ବୁଲାଇ ଆଣନ୍ତି । ବେଳେବେଳେ ଆମ ସଙ୍ଗରେ ଆଉ ଜଣେ ଦୁଇଜଣ ବନ୍ଧୁ ମଧ୍ୟ ଆମ ସହିତ ତାଙ୍କର ଅତିଥି ହୋଇଥାନ୍ତି ।

ଭୁବନାନନ୍ଦ ଦାସ ଜଣେ ସୁଦକ୍ଷ ନିର୍ଭୀକ ବକ୍ତା ଭବେ ସବୁ ପାର୍ଲିଆମେଣ୍ଟାରିଆନମାନଙ୍କ ନିକଟରେ ଖ୍ୟାତି ଅର୍ଜନ କରିଥାନ୍ତି । ତାଙ୍କର ଫାଇନାନ୍‌ସ୍ (ବିତ୍ତ)ରେ ଗଭୀର ଜ୍ଞାନ ଥିଲା । ଥରେ ଗୋଟିଏ ବକ୍ତୃତାରେ ବିପକ୍ଷ ସାହେବ ସଦସ୍ୟଙ୍କୁ ଲକ୍ଷ୍ୟ କରି କହିଥିଲେ. " You, apostles of Christ, is this your christian like action ?" ଲେଡିହାଡ଼ିଞ୍ଜର ଛାତ୍ରୀମାନଙ୍କ ନିକଟରେ ଏକଥା ପ୍ରଚାର ହୋଇ ବହୁ ଆନନ୍ଦ ଦେଉଥିଲା । ପାର୍ଲିଆମେଣ୍ଟ୍‌ରେ ତାଙ୍କର ବକ୍ତୃତା ଯେଉଁଦିନ ଥାଏ ସେଦିନ ପାର୍ଲିଆମେଣ୍ଟ ଯିବାପାଇଁ ଲେଡିହାଡ଼ିଞ୍ଜର ଛାତ୍ରୀମାନଙ୍କ ଭିତରେ ପାର୍ଲିମେଣ୍ଟ ଟିକିଟ୍ ପାଇଁ ବ୍ୟଗ୍ରତା ବଢ଼ି ଯାଏ । ଟିକିଟ୍ ନ ପାଇ ପାରିଲେ ଆମକୁ ଧରନ୍ତି, "ତମ ଦାଦିଙ୍କୁ କୁହ ଆମକୁ ଟିକିଟ୍ କରାଇ ଦିଅନ୍ତୁ ।"

ତାଙ୍କର ଏତେ କାମ ଭିତରେ ମଧ୍ୟ ଆମର ସୁବିଧା ଅସୁବିଧା ବୁଝିବାକୁ ସମୟ କରିପାରୁ ଥିଲେ । ଓଡ଼ିଆଣୀ କିପରି ସବୁଥିରେ ଦକ୍ଷତା ହାସଲ କରିବେ ସେଥିପାଇଁ ଆମକୁ ସବୁବେଳେ ଉତ୍ସାହିତ କରୁଥିଲେ । ତାଙ୍କୁ ହରାଇ ଆମେମାନେ ଜଣେ ପରମହିତୈଷୀ ଓ ଉତ୍କଳ ଜଣେ ବିରାଟ ଦେଶ-ସେବକଙ୍କୁ ହରାଇଛି । ତାଙ୍କ ଆତ୍ମା ଶାନ୍ତି ପାଉ ଏହା ହିଁ କାମନା ।

–୦–

# ସ୍ମୃତି ତର୍ପଣ

ଶ୍ରୀ ଅଲେଖ ପ୍ରସାଦ ଦାସ

**ସଂ**ସାର ଧ୍ରୁବ ନୁହେଁ କି ସ୍ଥାଣୁ ନୁହେଁ । ସତ୍ ପରମେଶ୍ୱର ନିଜର ପ୍ରାଣ କଳା ଦେଇ ଜଗତର ହିତ ବା ଅହିତ କର୍ମ ପାଇଁ ବିଶ୍ୱଲୀଳା ନିମିତ୍ତ ବିଶିଷ୍ଟ ସତ୍ତ୍ୱମାନଙ୍କୁ ପଠାନ୍ତି । ପରମେଶ୍ୱର "ସଦସତ୍ ପରଂ" ।

ସେହି ବିଶିଷ୍ଟ ସତ୍ତ୍ୱମାନଙ୍କ ମଧ୍ୟରେ ଆମ ଏହି ପ୍ରଦେଶରେ ଭୁବନାନନ୍ଦ, ବିଚିତ୍ରାନନ୍ଦ ଦୁଇ ଯମଜ ଭ୍ରାତା ପୃଥକ୍ କ୍ଷେତ୍ରରେ ମହୀୟାନ । ସେମାନଙ୍କର ସମକାଳୀନ ସହଯୋଗୀ ମିତ୍ରମାନଙ୍କର ଜୀବନ ପ୍ରବାହରୁ ଅନେକ ତଥ୍ୟ ମିଳିବ ।

ସର୍ବ ସ୍ୱର୍ଗତ ପ୍ରାଣକୃଷ୍ଣ ପରିଜା, ଗୋପବନ୍ଧୁ ଚୌଧୁରୀ, ନିଶାମଣି ଦାସ, ଓକିଲ ଭଗୀରଥୀ ମହାପାତ୍ର, ନିରଞ୍ଜନ ପଟ୍ଟନାୟକ, ସତ୍ୟନାରାୟଣ ସେନଗୁପ୍ତ, ଲକ୍ଷ୍ମୀନାରାୟଣ ସାହୁ, ପାରଳାଖେମୁଣ୍ଡି ମହାରାଜା ଓ ରମାଦେବୀ ଆଜି ନାହାନ୍ତି ।

ମୋର ଏ ସାମାନ୍ୟ ଜୀବନର ୮୩ ବର୍ଷ ମଧ୍ୟରେ ଦୀର୍ଘ ୬୫ବର୍ଷ ମୁଁ ଏହି ସ୍ୱର୍ଗତ ଗୁରୁଜନମାନଂକ ସହିତ ମିଶି ଯେ ଅମୂଲ୍ୟ ଜ୍ଞାନଧନ ପାଇଚି ତାହା ଗୋଟିଏ ଘଟଣାରେ କହୁଚି । ✓ଗୋପବନ୍ଧୁ ଦାସ ସାପ୍ତାହିକ "ସମାଜ"ରେ ତାଂକ ବନ୍ଧୁ ଓ କଂଗ୍ରେସ ସହକର୍ମୀ ଯାଜିପୁର କପିଳେଶ୍ୱର ନିବାସୀ ✓ ଘନଶ୍ୟାମ ମହାନ୍ତିଂକ ସଂପର୍କରେ ଲେଖିଥିଲେ– ବିନା ଯୌତୁକରେ କେହି ସୁଶିକ୍ଷିତ କରଣ ଯୁବକ ଘନଶ୍ୟାମଂକର କନ୍ୟାଙ୍କୁ ବିବାହ କରିବାକୁ ପ୍ରସ୍ତୁତ କି?

✓ଲକ୍ଷ୍ମୀନାରାୟଣ ସାହୁ ମତେ ଜଣାଇଲେ, ବୁଝାଇଲେ । ମୁଁ ବିବାହ କଲି । ମୁଁ ସେତେବେଳେ 'ସହକାର' ମାସିକ ପତ୍ରର ସଂପାଦକ ଥିଲି । ସହକାର ପତ୍ରିକା ଧରି ସ୍ୱାମୀ ବିଚିତ୍ରାନନ୍ଦଙ୍କ ଘରେ ପହଞ୍ଚିଲି– ଭୁବନାନନ୍ଦ ବାବୁ ଓ ପରିଜା ସାହେବ ମୋତେ ଆଦର କରି ବସାଇଲେ । ଭୁବନାନନ୍ଦ

ସାନ ହେତୁ "ନବା", ବିଚିତ୍ରାନନ୍ଦ ବଡ଼ ହେତୁ "କୁଶା" । ଦୁଇଭାଇ ଏହି ନାମରେ ଡକାଡକି ହୁଅନ୍ତି ।

ନବା ପଚାରିଲେ—"ତମ ବାହାଘର ବିଷୟ ନେଇ କେତେଦିନ ହେଲା ପତ୍ର ପତ୍ରିକାରେ ଚର୍ଚ୍ଚା ହଉଛି । ମୁଁ ତମର କୈଫିୟତ ପଢ଼ିଛି । ଏ ପ୍ରଚଳିତ ପ୍ରଥାକୁ ତମେ ଗୋଟାଏ ଧକ୍କା ଦେଇଛ । ଆମେ ମହାଯୁଦ୍ଧ ବେଳେ ଏଇ ପରିଜାଙ୍କ କଥାମାନି ବିଲାତରେ ରହିଲୁ । ହେମଚନ୍ଦ୍ର ନ ମାନି ଆସିଲା, ବୁଡ଼ିମଲା । ନୀଳମଣି ରହିଲେ । ବିଲାତ ଯାଇଁ ଆମେ ଅଜାତିଆ ହେଲୁ । ବଡ଼ଭାଇ (ରଘବାନନ୍ଦ) ତ ମୋର ମାଲିକ । ତାଙ୍କ ସଙ୍ଗରେ ମୁଁ ପୁରୀ ମୁକ୍ତି ମଣ୍ଡପ ତଳେ ଠିଆ ହୋଇ ମୁଣ୍ଡ ଲଗାଇଲି । ଜଣେ ଗୋଦର ବ୍ରାହ୍ମଣ ମୋ ମୁଣ୍ଡରେ ପାଦ ଲଦିଦେଲା । × × ତମର ଏ ପ୍ରେରଣା କାହାର ? ଲକ୍ଷ୍ମୀନାରାୟଣ ତ ଜାତିରେ ପାଣ ବୋଲି ଲେଖିଛି । ନା ପଣ୍ଡିତ ଗୋପବନ୍ଧୁ ବା ଗାନ୍ଧୀଜୀଙ୍କ ଶିକ୍ଷା ?" ମୁଁ ହସି କହିଲି—"ମୁଁ, ରଜକୃଷ୍ଣ ବାବୁ, କୁନ୍ତଳାକୁମାରୀ ବ୍ରାହ୍ମସମାଜକୁ ତିନିମାସ ଯାଏ ଯାଇଁ ଆଦି, ସାଧାରଣ ଓ ନବ ବିଧାନ—ବ୍ରାହ୍ମସମାଜର ତତ୍ତ୍ୱ ବୁଝିଥିଲୁ । ବିଶ୍ୱନାଥ କର ମୋତେ ପ୍ରାର୍ଥନାରୁ ଉଠାଇ ଦେଲେ । ଗାନ୍ଧୀଜୀ କହିଲେ ଯେ, ସେ ନିଜର ସାମାଜିକ ସ୍ଥିତି ନ ବଦଳାଇ ନିଜର ପରମାତ୍ମା ଓ ଜୀବାତ୍ମାର ସମ୍ବନ୍ଧ ସଦାସର୍ବତ୍ର ଅକ୍ଷୁଣ୍ଣ ରଖିଛନ୍ତି । ମୁଁ ମୋର ପିତୃ ସ୍ୱତ୍ତ୍ୱରେ ପଞ୍ଚସଖା ମହାପୁରୁଷ ଗୋଷ୍ଠୀର ବ୍ୟକ୍ତି । ଅଷ୍ଟଗୁଜ୍ଜରୀରେ ଅଚ୍ୟୁତାନନ୍ଦ ଲେଖି-ଚନ୍ତି ଛପନ କୋଟି ଜୀବଜନ୍ତୁ ସର୍ବଘଟେ ଏକତ୍ୱ । ଲୀଳା ନିମନ୍ତେ ନାନାକାର ଭଣେ ଦୀନ ଅଚ୍ୟୁତ ।"

ପରିଜା କହିଲେ— ଆଉ ନୂଆ ବ୍ରାହ୍ମ କେହି ହେବେ ନାହିଁ ।

ସ୍ୱାମୀଜୀ କହିଲେ— ବ୍ରାହ୍ମମାନେ ଅଦ୍ୱୈତବାଦୀ ହିନ୍ଦୁ । ଏହି ଭାବରେ ପରବର୍ତ୍ତୀ କାଳରେ ମଧ୍ୟ ଅନେକ ଆଲୋଚନା ହୁଏ ।

ସ୍ୱାମୀଜୀଙ୍କୁ ସୁଯୋଗ୍ୟ ପରିଚାଳକ ଦେଖି, ଆର୍ଯ୍ୟଧର୍ମ ପ୍ରଚାରକ ଭବାନନ୍ଦ ଗିରି ଉତ୍କଳ ଅନାଥାଶ୍ରମ ସମର୍ପଣ କଲେ । ଦାୟାଦ ହିସାବରେ ଏହି ଅନୁଷ୍ଠାନର ପରିଚାଳନା ପାଇଁ ବ୍ୟବସ୍ଥାରେ ବିଚିତ୍ରାନନ୍ଦଙ୍କର ସ୍ମୃତି ସମ୍ମାନିତ ହେବ ।

ଘଟଣାଚକ୍ରରେ ପଡ଼ି ମୁଁ ସ୍ୱାମୀଜୀଙ୍କୁ ତୁଳସୀ ରମାୟଣ ଆଉ ଶୁଣାଇ ପାରିନାହିଁ । ସେ ଥରେ ଠକ୍କରବାପା, ଈଶ୍ୱରଲାଲ ବ୍ୟାସଙ୍କ ସହିତ ସୁବର୍ଣ୍ଣରେଖା ନଦୀରେ ଝାଡ଼ପିପ୍‌ପଳ ଗଲାବେଳେ ମୋ ଠାରୁ ଆବୃତ୍ତି ଶୁଣି-ଥିଲେ ।

ମୋର ବଡ଼ପୁଅ ଗଜେନ୍ଦ୍ର ସ୍ୱାମୀଜୀଙ୍କର ସ୍ନେହାଦର ମନେ ରଖିଚି । ଏବେ ବହୁ ଜଞ୍ଜାଳ ମଧ୍ୟରେ ସେ ସ୍ମୃତି ଅମ୍ଳାନ ହୋଇ ରହିଛି । ସେ କଟକ ନାଲି ସଡ଼କରେ ନିଜ ଗାଡ଼ିରେ ଗଲାବେଳେ ଆମକୁ କେଡ଼େ ଆଦରରେ ଉଠାଇ ନିଅନ୍ତି ! ଏପରି ବହୁତ୍ କଥା ।

–୦–

# ଯାଆଁଳା ଭାଇ

**ଶ୍ରୀ ରଘୁନାଥ ରାଉତରାୟ**

ତ୍ରେତୟା ଯୁଗର ଲବ-କୁଶ ଏ ନୁହଁନ୍ତି, ଏହି ଯୁଗର ଲବ-କୁଶ ଯାଆଁଳା– ଭାଇ ସ୍ୱାମୀ ବିଚିତ୍ରାନନ୍ଦ ଦାସ (ସ୍ୱାମୀଜୀ) ଓ କନିଷ୍ଠ ଭୁବନାନନ୍ଦ ଦାସ (ମି.ବି.ଦାସ) । ଜଣଙ୍କୁ ସ୍ୱାମୀଜୀ ବୋଲି ସମସ୍ତେ ଚିହ୍ନନ୍ତି, ସମ୍ବୋଧନ କରନ୍ତି । ଅନ୍ୟଜଣଙ୍କୁ ବି.ଦାସ ବୋଲି ଚିହ୍ନନ୍ତି, ସାଧାରଣ ପାର୍ଶ୍ୱବ୍ୟକ୍ତିଗଣ ସାହେବ ବୋଲି କହିଥାନ୍ତି । ସ୍ୱର୍ଗୀୟ ପିତା ରାମଚନ୍ଦ୍ର ଦାସଙ୍କର ଯୋଗଜନ୍ମା ପୁତ୍ର ଏ ଦୁହେଁ । କେହି କାହାକୁ ଊଣା ନୁହଁନ୍ତି । ଚାଲି ଚଳନରେ ପରସ୍ପରଠାରୁ ପୃଥକ । ଏ ଦୁଇ ପୂଜ୍ୟପାଦଙ୍କର ଶତ ବାର୍ଷିକ ଉତ୍ସବ ଉପଲକ୍ଷ୍ୟେ ପ୍ରକାଶ ହେବାକୁ ଯାଉଥିବା ସ୍ମରଣିକାରେ ତାଙ୍କରି ପାଦରେ ମୋର ଭକ୍ତି ପୁଷ୍ପାଞ୍ଜଳି ସ୍ୱରୂପ ଏ କ୍ଷୁଦ୍ର ପ୍ରବନ୍ଧଟି ଲେଖିବାକୁ ଯାଉଛି ।

କେଉଁ ଏକ ଶୁଭ ମୁହୂର୍ତ୍ତରେ ଭୂଦାନ ନେତା ସ୍ୱର୍ଗୀୟ ଗୁଣନିଧି ମହାନ୍ତିଙ୍କ ମାଧ୍ୟମରେ ୧୯୫୧ ମସିହାରେ ମୁଁ ପ୍ରଥମେ ସ୍ୱାମୀଜୀଙ୍କର ଦର୍ଶନ ଲାଭ କରିଥିଲି ଏବଂ ପରେ ମି. ବି. ଦାସଙ୍କର ଦର୍ଶନ ପାଇଲି । ସେମାନଙ୍କର କରୁଣାରୁ (ସେତେବେଳେ ବି.ଦାସ ପାର୍ଲିଆମେଣ୍ଟ ନିର୍ବାଚନରେ ଭୈରବ ମହାନ୍ତିଙ୍କ ସହିତ ନିର୍ବାଚନରେ ଲଢୁଥାନ୍ତି) ମୁଁ ବି.ଦାସଙ୍କ ନିର୍ବାଚନ ପ୍ରଚାରରେ ସାହାଯ୍ୟ କରିଥିଲି । ପ୍ରାୟ ଏକ ମାସ ଧରି ସ୍ୱାମୀଜୀଙ୍କ ସହିତ ଗୋଟିଏ ଟ୍ୟାକ୍‌ସିରେ ଯାଜପୁର ସବ୍‌ଡିଭିଜନ ଭ୍ରମଣ କରିବାର ସୌଭାଗ୍ୟ ମଧ୍ୟ ଲାଭ କରିଥିଲି । କେନ୍ଦ୍ରାପଡ଼ା ଓ ଯାଜପୁରକୁ ମିଶାଇ ତାଙ୍କର ନିର୍ବାଚନ ମଣ୍ଡଳୀ ଥିଲା । ପରେ ଦୀର୍ଘ ୪ବର୍ଷ ସ୍ୱାମୀଜୀଙ୍କର ନିକଟ ସମ୍ପର୍କରେ ରହିବାର ସୌଭାଗ୍ୟ ମୋର ଘଟିଥିଲା । ସେହି ସମୟର ଅନୁଭୂତି ଆଜି ସ୍ମରଣକୁ ଆସୁଛି ।

"ସ୍ୱାମୀଜୀ" ସ୍ୱାମୀ ବିବେକାନନ୍ଦ, ସ୍ୱାମୀ ଶିବାନନ୍ଦ ବା ସ୍ୱାମୀ ପ୍ରଣବାନନ୍ଦ ଆଦିଂକ ପରି ଯୋଗୀ, ଗୃହତ୍ୟାଗୀ ସନ୍ନ୍ୟାସୀ ନ ଥିଲେ ସାଧାରଣଂକ ଦୃଷ୍ଟିରେ । ମାତ୍ର ତାଙ୍କୁ ଅନୁଧ୍ୟାନ କଲେ ଜଣାଯାଏ ସେ

ଏକ ମହାନ ତ୍ୟାଗୀ, ପରମ ବୈଷ୍ଣବ, ଭଗବତ୍ ଭକ୍ତ, ସାଧୁ, ସନ୍ନ୍ୟାସୀ ଥିଲେ । ସେ ସର୍ବ ଗୁଣରେ ପରିପୂର୍ଣ୍ଣ ଥାଇ ତାଙ୍କର ସ୍ୱାମୀଜୀ ନାମ ସାର୍ଥକ କରିଥିଲେ । ଗୃହ ସଂସାର ମଧ୍ୟରେ ଥାଇ ମାତୃହରା ଏକମାତ୍ର କନ୍ୟା ଲାବଣ୍ୟ ଓ ତାଙ୍କର ସନ୍ତତିମାନେ, ଭ୍ରାତୁଷ୍ପୁତ୍ରୀ, ଭ୍ରାତୃବଧୂ (ସ୍ୱର୍ଗୀୟା ରୁକ୍ମିଣୀ ଦେବୀ) ଆଦିଙ୍କ ସହିତ ବହୁ କୁଟୁମ୍ବୀ ସଂସାରୀ ଥାଇ ମଧ୍ୟ ସ୍ୱାମୀଜୀ ଥିଲେ ତ୍ୟାଗୀ । ପଦ୍ମପତ୍ରରେ ଜଳପରି ସେ ସବୁ ଭିତରେ ଥାଇ, କାହାରି ଭିତରେ ନ ଥିଲେ । କିନ୍ତୁ ସବୁଥିଲା ତାଙ୍କ ଭିତରେ । ଅର୍ଥାତ୍ ସମସ୍ତେ ତାଙ୍କୁ ଜାବୁଡ଼ି ଧରିଥିଲେ । ଦାନ କରିବା ଥିଲା ତାଙ୍କ ଆଚରଣର ଏକ ପ୍ରଧାନ ଅଙ୍ଗ । ଭିକାରୀଙ୍କୁ ପଇସା ଦେଲେ ସେ ଉଦର ଭରି ଖାଦ୍ୟ ଗ୍ରହଣ କଲା ପରି ପରମ ସନ୍ତୋଷ ଲଭୁଥିଲେ । କହିଲେ ଭୁଲ ହେବ ନାହିଁ ଯେ ଭିକ୍ଷା ଦେବାକୁ ପଇସା ନ ଥିଲେ ସେ ରୋଗଗ୍ରସ୍ତ ହୋଇ ଶଯ୍ୟାଶାୟୀ ହେଉଥିଲେ । ତାଙ୍କର ସ୍ୱଦେହ ଚିକିତ୍ସକ ପ୍ରଫେସର ଶରତଚନ୍ଦ୍ର ମିଶ୍ର ଔଷଧ ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ରୋଗର ଏହି କାରଣଟି ନିର୍ଣ୍ଣୟ କରି ପାରୁଥିଲେ ଏବଂ ତାହାର ବ୍ୟବସ୍ଥା କରିବାକୁ ଶ୍ରୀମତୀ ବି.ଦାସଙ୍କୁ ବା ତାଙ୍କର ଅନୁପସ୍ଥିତିରେ ଅନ୍ୟାନ୍ୟ ଆତ୍ମୀୟମାନଙ୍କୁ ପରାମର୍ଶ ଦେଇଥିଲେ । ସ୍ୱାମୀଜୀ ନିଜ ଜୀବଦ୍ଦଶାରେ ବିପୁଳ ଅର୍ଥ ଆୟ କରୁଥିଲେ ମଧ୍ୟ ସର୍ବଦା ଅର୍ଥାଭାବର ସମ୍ମୁଖୀନ ହେଉଥିଲେ । ଏପରିକି ବେଳେ-ବେଳେ ଭିକ୍ଷା ଦେବାକୁ ମଧ୍ୟ ତାଙ୍କ ହସ୍ତରେ ପଇସାଟିଏ ରହୁ ନ ଥିଲା । ଅନ୍ୟମାନଙ୍କ ବ୍ୟତୀତ କଟକ ବ୍ୟାଙ୍କର ପରିଚାଳକ ଶ୍ରୀଯୁକ୍ତ ଜ୍ଞାନ ବୋଷ ଏପରି ସମୟରେ ସ୍ୱାମୀଜୀଙ୍କୁ ହାତ ଉଧାର ଟଙ୍କା ଦେବାକୁ ସ୍ୱତଃ ଆଗେଇ ଆସୁଥିଲେ । ହେଲେ ମଧ୍ୟ ସ୍ୱାମୀଜୀ ସେଥିରେ କେବେହେଲେ ବିବ୍ରତ ହେଉ ନ ଥିଲେ ବା ଭାଙ୍ଗି ପଡୁ ନ ଥିଲେ । ସେ କହୁଥିଲେ ଯେ ମୋର ଗୁରୁ ମି.ଦାସ (ମଧୁବାରିଷ୍ଟର) ଶେଷ ଜୀବନରେ ବହୁ ଅର୍ଥାଭାବର ସମ୍ମୁଖୀନ ହୋଇ ମଧ୍ୟ, ନିଜ ଆଚରଣରୁ, ନିଜ ନୀତିରୁ, ତଳକୁ ଖସି ନାହାନ୍ତି । ମୁଁ ଖସିବି କିପରି ? ସ୍ୱାମୀଜୀଂକର ଯୌବନାବସ୍ଥାରେ ସ୍ତ୍ରୀ ବିୟୋଗ ଘଟିଥିଲା ଏବଂ ସେହି ଦିନୁ ସେ ଆଜୀବନ ବିପତ୍ନୀକ ରହିଥିଲେ ।

ସମ୍ପଦ ଓ ବିପଦରେ ଶ୍ରୀମଦ୍ ଭଗବଦ୍ ଗୀତା ଥିଲା ତାଙ୍କର ସାଥୀ । ସେ ଥିଲେ ସ୍ଥିତପ୍ରଜ୍ଞ । ତାଙ୍କର କନିଷ୍ଠ ଭ୍ରାତୁଷ୍ପୁତ୍ର (ବି. ଦାସଙ୍କ କନିଷ୍ଠ

ପୁତ୍ର ) ଆଇନ କଲେଜର ଶେଷବର୍ଷର ଛାତ୍ର ଶ୍ରୀମାନ୍ ଉତ୍କଳ ରଞ୍ଜନ ଦାସ (ତାଙ୍କ ନାମ ଅଜୁବାବୁ)ଙ୍କର ଆକସ୍ମିକ ମୃତ୍ୟୁରେ କଟକର ସତୀ ଚଉରା ଶ୍ମଶାନରେ ଅଜୁବାବୁଙ୍କ ଚିତାରେ ଶେଷ କାଷ୍ଠ ଖଣ୍ଡ ଦାନକରି ସ୍ୱାମୀଜୀ କହି-ଥିଲେ, "ହେ ଭଗବାନ ମୋତେ ଧୈର୍ଯ୍ୟ ଦିଅ ।" କାରଣ ଅଜୁବାବୁ ଥିଲେ ସ୍ୱାମୀଜୀଙ୍କ ଆଇନ ବ୍ୟବସାୟର ଉତ୍ତରାଧିକାରୀ । ଅନ୍ୟ ପୁତୁରା ଦୁହେଁ ଇଂଜିନିୟର । ସର୍ବାବସ୍ଥାରେ ଦିଗ୍‌ଦର୍ଶନ ପାଇବାକୁ ସ୍ୱାମୀଜୀ ଭଗବଦ୍ ଗୀତାକୁ ଜୀବନର ପରମ ସହାୟକ ଭାବେ ବାଛି ନେଇଥିଲେ ।

ମିଷ୍ଟଭାଷା, ଭଦ୍ରୋଚିତ ବ୍ୟବହାର, ଉଚ୍ଚାଭିଳାଷ, ବିନୟ ଆଦି ଗୁଣରେ ସ୍ୱାମୀଜୀ ପରିପୂର୍ଣ୍ଣ ଥିଲେ ! କୌଣସି କ୍ଷେତ୍ରରେ ନିଜର କୌଣସି ପ୍ରକାର ତ୍ରୁଟି ହେଲମାତ୍ରେ ସାନ, ବଡ଼, ଉଚ୍ଚ, ନୀଚ ପ୍ରତ୍ୟେକ ବ୍ୟକ୍ତିଙ୍କୁ "କ୍ଷମାକର" (Excuse me) ବୋଲି କହିବା ତାଙ୍କର ଆଚରଣ ଥିଲା ।

ମି. ବି. ଦାସ ବିଦେଶ ଫେରନ୍ତା ଇଂଜିନିୟର । ଦୀର୍ଘକାଳ ଧରି ଲୋକସଭାର ସଭ୍ୟ, ଉଚ୍ଚମନା, ଜାତୀୟବାଦୀ, ସ୍ପଷ୍ଟବାଦୀ, ସ୍ୱାଧୀନତା ସଂଗ୍ରାମୀ, ପରୋପକାରୀ ନେତା ଥିଲେ । ତାଙ୍କର ଚାଲିଚଳନ ଥିଲା ସାହେବଙ୍କ ପରି ମାତ୍ର ବେଶ ପୋଷାକ ଥିଲା ସ୍ୱଦେଶୀ ଖଦଡ଼ ଧୋତି, ପଞ୍ଜାବି, ଜହର ଜାକେଟ, ଖଦଡ଼ ଟୋପି ଆଦି । ସହଧର୍ମିଣୀ ରୁକ୍ମିଣୀ ଦେବୀଙ୍କୁ ପାଖେ ପାଖେ ରଖି, ଉଚ୍ଚାଭିଳାଷିନୀ କରାଇ, ଓଡ଼ିଶାର ନାରୀନେତ୍ରୀମାନଙ୍କ ମଧ୍ୟରେ ଅନ୍ୟତମ. କରାଇବାରେ ମି. ଦାସଙ୍କର ବହୁ ଅବଦାନ ଥିଲା । ରୁକ୍ମିଣୀ ଦେବୀ ମଧ୍ୟ ବହୁ ଦେଶ ହିତକର ଅନୁଷ୍ଠାନମାନଙ୍କରେ ସଦସ୍ୟା ରହି ସ୍ୱାମୀଙ୍କ ସହ ଦେଶ ସେବାରେ ବ୍ରତୀ ଥିଲେ । ସ୍ୱାମୀଜୀ ଓ ବି. ଦାସ ଦୁହେଁ ଜୀବନରେ ଧନ ସଞ୍ଚିତ ରଖି ନିଜେ ଧନୀ ହେବାର ଇଚ୍ଛାକରି ନ ଥିଲେ । ଉତ୍କଳର ବରପୁତ୍ର ଏ ଦୁଇ ଭାଇ ଦେଶ ଓ ଜାତିକୁ ହିଁ ଧନ, ମାନ ବୋଲି ଜାଣି ତଦନୁଯାୟୀ କର୍ମକରି ନେତୃତ୍ୱ ଦେଇଥିଲେ । ବି. ଦାସଙ୍କୁ "Father of the house"ବା "Father of the Parliament"ବୋଲି କୁହାଯାଉଥିଲା । କଲିକତାର ବି. ସିଂହ M. P. ଥିଲେ ବି. ଦାସଙ୍କର ଅତି ଘନିଷ୍ଠ । ଲୋକସଭାରେ ବି. ଦାସ ଥିଲେ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁଙ୍କର ଖୁବ୍ ବିଶ୍ୱସ୍ତ । ପବ୍ଲିକ୍ ଆକାଉଣ୍ଟସ୍ କମିଟିର ଚେୟାରମ୍ୟାନ ଭାବେ ମି. ବି. ଦାସ ତାଙ୍କର

କାର୍ଯ୍ୟ ଦକ୍ଷତା ଦର୍ଶାଇ ଭାରତର ନେତୃବର୍ଗଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲେ । ଓଡ଼ିଆ ବୋଲି ଗର୍ବ କରିବା ସ୍ୱାମୀଜୀ ଓ ବି. ଦାସଙ୍କର ଜନ୍ମଗତ ଆଚରଣ ଥିଲା । ସର୍ବାବସ୍ଥାରେ, ସର୍ବକ୍ଷେତ୍ରରେ ଏ ଦୁଇ ନେତା ଓଡ଼ିଆଙ୍କର ଅପମାନ ସହ୍ୟକରି ନ ପାରି ପ୍ରତିବାଦ କରୁଥିଲେ । ମହାତ୍ମା ଗାନ୍ଧୀଙ୍କଠାରୁ ଆରମ୍ଭ କରି ଭାରତ ତଥା ଓଡ଼ିଶାର ପ୍ରତ୍ୟେକ ନେତୃବର୍ଗଙ୍କ ନିକଟରେ ଏ ଦୁଇ ଭାଇ ପରିଚିତ, ବନ୍ଧୁ ତଥା ସହକର୍ମୀ ଥିଲେ । ସୀମା କମିଶନ ଚେୟାରମ୍ୟାନ ଭାବେ ଡଃ କୁଞ୍ଜୁରୁ ଯେତେବେଳେ ଓଡ଼ିଶା ଆସିଥିଲେ ଅନ୍ୟତମ ନେତା ବିଶ୍ୱନାଥ ଦାଶଙ୍କ ନିକଟରେ କୁଞ୍ଜୁରୁ ସାହେବ ନିଜର ଇଚ୍ଛା ପ୍ରକାଶ କରି ସ୍ୱତଃ ଡଗରପଡ଼ା ସ୍ଥିତ ସ୍ୱାମୀଜୀ ଓ ବି. ଦାସଙ୍କ ବାସଭବନରେ ରହିଥିଲେ ଏବଂ ଦିନକ ମଧ୍ୟରେ ଏମାନଙ୍କ ପରିବାରର ଆତିଥ୍ୟରେ ଏତେ ମୁଗ୍‌ଧ ହୋଇଥିଲେ ଯେ ବି. ଦାସଙ୍କ ଜ୍ୟେଷ୍ଠାକନ୍ୟା ଶିଶୁ ଗୌରୀଙ୍କୁ (ବର୍ତ୍ତମାନର ପ୍ରଫେସର ଗୁରୁଚରଣ ମହାନ୍ତିଙ୍କ ପୁତ୍ରବଧୂ ଶ୍ରୀ ହେମନ୍ତ କୁମାର ମହାନ୍ତିଙ୍କ ସହଧର୍ମିଣୀ) କୋଳରେ ଧରି ଚୁମା ଦେଉଥିଲେ । ନିଜେ ବହୁପଦ ପଦବୀର ଅଧିକାରୀ ହୋଇ, ନେତୃତ୍ୱର ଊର୍ଦ୍ଧ୍ୱରେ ଥାଇ, ବହୁ ସମ୍ମାନାସ୍ପଦ ହୋଇ ମଧ୍ୟ ସ୍ୱାମୀଜୀ ଓ ବି. ଦାସଙ୍କୁ ଗର୍ବ ସ୍ପର୍ଶ କରି ନ ଥିଲା । ଯେ କୌଣସି ବ୍ୟକ୍ତି ଯେ କୌଣସି ସମୟରେ ଏ ଦୁଇ ଭାଇଙ୍କର ସାକ୍ଷାତ ପାଇପାରୁ ଥିଲେ । ଆବଶ୍ୟକ ସ୍ଥଳେ ନାନା ପ୍ରକାର ମଧ୍ୟ ସାହାଯ୍ୟ ପାଉଥିଲେ । ରିକ୍ତହସ୍ତ ଓ ରିକ୍ତ ମନରେ ଫେରାଇ ଦେବା ଯେପରି ଏମାନଙ୍କର ଜାତକରେ ନ ଥିଲା ।

କଟକ ସହର ମଧ୍ୟସ୍ଥ ବିଭିନ୍ନ ସମସ୍ୟା, ଜାତୀୟ ସଙ୍କୀର୍ଣ୍ଣତା ଆଦି ବିଷୟମାନଙ୍କରେ ସ୍ୱାମୀଜୀ ପ୍ରାୟ ଭାଗ ନେଉଥିଲେ, ପରାମର୍ଶ ଦେଉଥିଲେ । ବିଭିନ୍ନ କ୍ଷେତ୍ରରେ ଦେଓ୍ୱାନ ବାହାଦୁର ଲକ୍ଷ୍ମୀଧର ମହାନ୍ତି, ଶ୍ରୀଯୁକ୍ତ ପାରେଶ୍ୱର ମହାନ୍ତି (ବଡ଼), ରାୟବାହାଦୁର ଦୁର୍ଗାଚରଣ ଦାସ, ରାୟବାହାଦୁର ଭିକାରୀ ଚରଣ ପଟ୍ଟନାୟକ, ଭୂତପୂର୍ବ ଜଜ୍ ବିପ୍ରଚରଣ ଦାସ, ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ, ପ୍ରଫେସର ଗୁରୁଚରଣ ମହାନ୍ତି ଓଗେରେ କଟକର ସମ୍ମାନୀୟ ବ୍ୟକ୍ତିମାନେ ସ୍ୱାମୀଜୀଙ୍କ ପରାମର୍ଶକୁ ଅତି ମୂଲ୍ୟବାନ ମନେ କରୁଥିଲେ ।

ଯୌତୁକ ପ୍ରଥାର ନିନ୍ଦା କରି କଟକର ଜନୈକ ନେତା ତଥା ଜମିଦାରଙ୍କ କନ୍ୟାର ବିବାହରେ ବହୁ ପରିମାଣର ଯୌତୁକ ଦାନକୁ ନା ପସନ୍ଦ

କରି ସ୍ୱାମୀଜୀ ନିଜ ସାଥୀମାନଙ୍କ ସହ ବିବାହ ଭୋଜିକୁ ପରିତ୍ୟାଗ କରି ଫେରି ଆସିଥିଲେ । ପରେ କହି ଥିବାର ଶୁଣିଥିଲୁ : ''ଏମାନେ ଦେଶ ଓ ଜାତିକୁ ନେତୃତ୍ୱ ଦେଉଛନ୍ତି ପରା ? ମାତ୍ର ଆଜି ଏ ଯାହା କଲେ ଏଣିକି କରଣ ଘରର ଝିଅମାନେ ବିଭାହୋଇ ପାରିବେତ । ଆଉ କ'ଣ କାହାରି ସୁନ୍ଦରୀ, ଶିକ୍ଷିତା କନ୍ୟା ନାହିଁ; ନା ଯା'ଙ୍କ ପରି ସମସ୍ତେ ଲକ୍ଷାଧିକ ଯୌତୁକ ଦେଲା ଭଳି ଧନୀ ହୋଇ-ଛନ୍ତି ? ଏଇତ ଏମାନଙ୍କର ନେତୃତ୍ୱ, ଜାତିପ୍ରେମ, ଦେଶପ୍ରେମ ।'' ଗୃହକୁ ଫେରି ସ୍ୱାମୀଜୀ ଏତେ ମ୍ରିୟମାଣ ହୋଇ ପଡ଼ିଥିଲେ ଯେ 'ସୁଧା' ପୂଜାରୀ କ୍ଷୀର କପ୍‌ଟି ଫେରାଇ ନେଇଥିଲା । ସ୍ୱାମୀଜୀ ଉପବାସରେ ଶୟନ କରିଥିଲେ । ଧନ୍ୟ ସେ ହୃଦୟ ଯେଉଁ ହୃଦୟ ଆଜକୁ ତିରିଶ ବର୍ଷ ପୂର୍ବରୁ ଯୌତୁକ ଦାନର ଅପକାରିତା ତଥା କନ୍ୟା ଓ କନ୍ୟା ପିତାମାନଙ୍କର ଭବିଷ୍ୟତାଗମ ଦୁଃଖକୁ ହୃଦୟଙ୍ଗମ କରିଥିଲେ । ଧନ୍ୟ ସେହି ଦୂରଦ୍ରଷ୍ଟା । ଆଜି ତାଙ୍କର ଆଶଙ୍କାକୁ ସମାଜ ଅନୁଭବ କରୁଛି ଓ ଅଙ୍ଗେ ନିଭେଉଛି ।

ସ୍ୱାମୀଜୀ ପ୍ରତିଦିନ ପ୍ରାତଃ ଭ୍ରମଣ କରନ୍ତି । କଟକରେ ଥିବା ବେଳେ ତଗରପଡ଼ା ବାସ ଭବନରୁ ଅନାଥାଶ୍ରମ ଦେଇ ସତୀ ଚଉରା, ସେଠାରୁ କାଠ-ଯୋଡ଼ୀ ନଦୀ ବନ୍ଧରେ ହରିହର ଘାଟ ଦେଇ ପ୍ରତ୍ୟାବର୍ତ୍ତନ । ସାଥୀ ତାଙ୍କର ଦଶଟା ଖଣ୍ଡେ ଦେଶୀ ମାଇ, ଅଣ୍ଡିରା କୁକୁର । ଖଦଡ଼ର ଗେରୁ ରଙ୍ଗର ଲୁଙ୍ଗି, ଅଧା ପଞ୍ଜାବି, ଖଦଡ଼ ଟୋପୀ ଗେରୁରଙ୍ଗର, ହାତରେ ନାରଗୁଣୀ କାଠର ବଙ୍କୁଲିବାଡ଼ି । ଦ୍ରୁତଗତିର ଚାଲି । ବାଟରେ ଗଲାବେଳେ ଅନାଥାଶ୍ରମ ଖବର ବୁଝିବା ଓ ଗାଉଁଲି, ମଳିମୁଣ୍ଡିଆ, ବୁଢ଼ାଳିଆ ଲୋକଙ୍କ ସହ ଦୁଃଖ ସୁଖ କଥା ହେବା ସକାଳର କର୍ମ । ବିଲାତି କୁକୁର ପୋଷିବାକୁ ସ୍ୱାମୀଜୀ ନାପସନ୍ଦ କରୁଥିଲେ । ପଚାରିଲେ କହନ୍ତି ଗାଉଁଲି କୁକୁରଠୁଁ ସେ କ'ଣ ଏତେ ସୁନ୍ଦର, ଏତେ ବିଶ୍ୱାସୀ, ଏତେ ନିଜର । ଦଶଟାରୁ ବେଶୀ କୁକୁର ଅଗଣାରେ ଶୋଇ-ଥିବେ ବୁଲୁଥିବେ, ସ୍ୱାମୀଜୀଙ୍କ କର ସ୍ପର୍ଶ ପାଉଥିବେ । ତାଙ୍କ ପାଇଁ ଅଳ୍ପ ଧାନ ଥିବା ମୋଟାଚାଉଳରେ ମାଂସ ଟୁକୁରା ଓ ହଳଦୀ ମିଶାଇ ରନ୍ଧା ଯାଇ ଦିଆ ଯିବ । ପ୍ରତିଦିନ ନିଜେ ତାଙ୍କ ଖବର ବୁଝନ୍ତି ସ୍ୱାମୀଜୀ ।

ସେ ଦୀନ ହୀନ ମଳିମୁଣ୍ଡିଆଙ୍କର ଦୁଃଖ ଶୁଣନ୍ତି, ପ୍ରତିକାର କରନ୍ତି । ଯୋରନ୍ଦା ଆଶ୍ରମର ସିଦ୍ଧ ପୁରୁଷ ବିଶ୍ୱନାଥ ବାବା ଆସନ୍ତି ସ୍ୱାମୀଜୀଙ୍କଠାକୁ ।

ଅଗଣାରେ ଟେବୁଲ ଉପରେ ବସନ୍ତି ବିଶ୍ୱନାଥ ବାବା । ତଳେ ଆରାମ ଚେୟାରରେ ସ୍ୱାମୀଜୀ । ଦୀର୍ଘ ସମୟ ଧରି ଧର୍ମାଲୋଚନା ଚାଲେ । ମଣିଷ ଏକ, ଜାତି ଏକ, ଧର୍ମ ଏକ, କର୍ମ ବିଭିନ୍ନ, ଲକ୍ଷ୍ୟ ଏକ ଇତ୍ୟାଦି । କେଡ଼େ ତୃପ୍ତି-ଦାୟକ ସେ ଆଲୋଚନା । ସ୍ୱାମୀଜୀଙ୍କର କଚେରିକୁ ଯିବା ପୋଷାକ ଏଡ଼୍-ଭୋକେଟ୍‌ଙ୍କ ପୋଷାକ । ବାହାରକୁ ଯିବା ପୋଷାକ ଖଦଡ଼ ଧୋତି, ପଞ୍ଜାବି, ଜହର ଜ୍ୟାକେଟ୍ କେବେ କେବେ ଗଳାଚିପା ଲମ୍ବା କୋଟ । ଘରେ ଗେରୁ ରଙ୍ଗର ଖଦଡ଼ ଲୁଙ୍ଗି, 'ଭି' କଲର, ଦୁଇଟି ପକେଟ ଥିବା ହାତ ତିଆରି ପଞ୍ଜାବି । ସେଇ ପୋଷାକରେ ନିଜ ଘର ଅଫିସରେ ମକ୍‌କିଲଙ୍କ କାର୍ଯ୍ୟ କରନ୍ତି ।

ଅତିଥି ଚର୍ଚ୍ଚା ଆଚରଣର ଅନ୍ୟ ଏକ ଅଙ୍ଗ ସ୍ୱାମୀଜୀଙ୍କର । ଯେ ଆସିବ ଖାଇବ ନିଶ୍ଚୟ । ଦି'ପଟ ରୁଟି, ବରା ଗୋଟିଏ, କଳାମାଣ୍ଡିଆ ଯାଉ ମେଞ୍ଚାଏ, ପାଚିଲା କଦଳୀ ଗୋଟିଏ ବା ଭୁବନେଶ୍ୱର କୋରା ଗୋଟିଏ । ପହଞ୍ଚିଲା ମାତ୍ରେ 'ସୁଧା' ପୂଜାରୀ ବା ନାଥିଆ ଚାକର (ନାଥ ବାରିକ) ଆଣି ଥୋଇବ । ଖାଇବାକୁ ହେବ । ସ୍ୱାମୀଜୀ ଚାହିଁଥିବେ । ନ ଖାଇଲେ ଆଦେଶ ବା ଅନୁରୋଧ ନିଶ୍ଚୟ ଆସିଯିବ । ଦିନେ ମଜା ଘଟଣା ହେଲା । ସକାଳେ ସ୍ୱାମୀଜୀ ପାଣିଟବ୍‌ରେ ପଶି ସ୍ନାନ କରୁଛନ୍ତି । କୌଣସି କାର୍ଯ୍ୟ ନେଇ ଜଷ୍ଟିସ ହରିହର ମହାପାତ୍ର ସ୍ୱାମୀଜୀଙ୍କଠାକୁ ଆସିଲେ । ଚିରଚରିତ ପ୍ରଥାନୁଯାୟୀ 'ସୁଧା' ଆଣି ଥୋଇଲା ଜଳଖିଆ । ହରିହରବାବୁ ସେ ଖାଦ୍ୟକୁ ଦେଖି ଡରି-ଲେଣି । କାରଣ ଏପରି ଖାଦ୍ୟରେ ସେ ଅଭ୍ୟସ୍ତ ନୁହଁନ୍ତି । ଏଣେ ସ୍ୱାମୀଜୀଙ୍କର ଘନ ଘନ ଅନୁରୋଧ ଏଡ଼ି ପାରିଲେନି । ଅଳ୍ପଟିକେ ଖାଇବାକୁ ବାଧ୍ୟ ହେଲେ ମି. ମହାପାତ୍ର । ଗଲାବେଳେ କହିଲେ, "ସ୍ୱାମୀଜୀଙ୍କ ଅନୁରୋଧ ଏଡ଼ି ହୁଏନା ।" ଏହିପରି ଭାବେ ସେ ପ୍ରତ୍ୟେକଙ୍କୁ ସ୍ନେହରେ ବାନ୍ଧି ପକାଉଥିଲେ । ସ୍ୱାମୀଜୀଙ୍କ ପାଇଁ ପୂଜ୍ୟା ରମାଦେବୀ ' ମାଣ୍ଡିଆ ପ୍ରାୟ ବରୀରୁ ଯୋଗାଇ ଦିଅନ୍ତି ।

ଅନ୍ୟ ଦିନକର ଘଟଣା । ମି. ବି. ଦାସ ଥାଆନ୍ତି କଟକରେ । ରେଭେନ୍‌ସା କଲେଜ ଛାତ୍ର କେତେଜଣ ଆସିଥାନ୍ତି କୌଣସି ପରାମର୍ଶ ନେବାକୁ । ବି. ଦାସ ଚା' ଦେଲେ ପିଲାଙ୍କୁ । ନିଜେ ପିଲାଙ୍କ ସାଥୀରେ ତାଙ୍କ ଉପର ମହଲରେ ବସି ଚା' ଖାଉଥାନ୍ତି । ପିଲାଙ୍କ ଭିତରୁ କେହି ଚା'କୁ ଫୁଙ୍କି ଫୁଙ୍କି ଖାଉ-

ଥାନ୍ତି । କେହି ଚା’କୁ ପ୍ଲେଟରେ ଢାଳି ଖାଉଥାନ୍ତି, କେହି ଚା’ କପ୍ ପ୍ଲେଟରେ ଠକ୍ କରି (ଶବ୍ଦ) ଥୋଇ ଦେଉଥାନ୍ତି । ଏସବୁ ଦେଖି ଗମ୍ଭୀର ଭାବେ ବି. ଦାସ ପିଲାମାନଙ୍କୁ ଇଂରାଜୀରେ, କହିଲେ "ଦେଖ ମୋ ପିଲାମାନେ, ଚା’ ଓଡ଼ିଆର ପାନୀୟ ନୁହେଁ । ଯା’କୁ ଯେଉଁମାନେ ପିଅନ୍ତି ଏବଂ ଆମେ ଯାହାଙ୍କଠୁଁ ଯାକୁ ପିଇବା ଶିଖିଲୁ ସେମାନେ କିପରି ଚା’ ପିଅନ୍ତି ତାହା ଶିଖିଲୁ ନାହିଁ । ମୁଁ କିପରି ଚା’ ପିଇଲି ଦେଖିଲଟି ? ଏହାକୁ ଅନୁକରଣ କରିବା ଉଚିତ ନୁହେଁ କି ? ପିଲାମାନେ ହାତ ଯୋଡ଼ି କୃତଜ୍ଞତା ଜଣାଇଲେ ଏବଂ ଖୁସିରେ ଅନେକ କଥା ପ୍ରଶ୍ନ କଲେ । ବି. ଦାସ ଆନନ୍ଦରେ ବୁଝାଇବାକୁ ଲାଗିଲେ । ବି. ଦାସ ଥିଲେ ଓଡ଼ିଆ ପୁଣି ସାହେବ । ଯେଉଁ ସ୍ଥାନରେ ଯେପରି ବ୍ୟବହାର, ସେ ସ୍ଥାନରେ ଆଦର୍ଶକୁ ଜଗି ସୁରୁଚିପୂର୍ଣ୍ଣ ରୂପେ ଆଚରଣ କରିବା ଥିଲା ତାଙ୍କର ଆଦର୍ଶ । ରୁକ୍ମିଣୀଦେବୀ ବି. ଦାସ ସାହେବଙ୍କ ସଙ୍ଗେ ସାହେବାଣୀ, ମାତ୍ର ବିଦେଶରେ, ଓଡ଼ିଆଣୀର ପୋଷାକରେ ସାହେବାଣୀର ଆଚରଣ କେବଳ ବିଦେଶାଗତା ରମଣୀମାନଙ୍କ ସଙ୍ଗେ । କଟକରେ ପକ୍କା ଓଡ଼ିଆ ଘରର ଗୃହଲକ୍ଷ୍ମୀ । ଘରେ ଢିଙ୍କି ଠାରୁ ଆରମ୍ଭ କରି ଚୌକେଇ, ଆଟିକା ସବୁ ଓଡ଼ିଆ ଘରର ସରଞ୍ଜାମ ରକ୍ଷଣାବେକ୍ଷଣରେ ସେ ଅଗ୍ରଗଣ୍ୟା । ଗୁରୁବାର ଦିନ ଝୋଟି ଦେବାଠୁଁ ଆରମ୍ଭ କରି ଓଡ଼ିଆଙ୍କର ବାର ଓଷା, ତେର ପୂନେଇରେ ପିଠାପଣା, ବ୍ରତ ଆଦି ସବୁ ସେ କରନ୍ତି । ତାଙ୍କର ଝିଅମାନଙ୍କୁ ପରାମର୍ଶ— "ପିଲା ଗର୍ଭରେ ରହିଲେ ନିଶ୍ଚୟ ପରିଶ୍ରମ କରିବ । ଚାଉଳ ବାଟିବ, ଢିଙ୍କିରେ କୁଟିବ ।" ମନେପଡ଼େ ତାଙ୍କର ମଧ୍ୟମା କନ୍ୟା (ପ୍ରମିଳା) ପାପୁଦେଇ (ପ୍ରଫେସର କ୍ଷୀରୋଦ ପଟ୍ଟନାୟକଙ୍କ ସହଧର୍ମିଣୀ,) ପ୍ରଥମ ସନ୍ତାନର ଜନନୀ ହେଲାବେଳେ ରୁକ୍ମିଣୀଦେବୀ ନିଜେ ବସି ଝିଅକୁ କିପରି ଢିଙ୍କିରେ ଚଢ଼ାଇ ଦୈନିକ ଦଶ ପନ୍ଦର ପାହର ଢିଙ୍କି କୁଟାଉଥିଲେ । କେତେ ଆଦର୍ଶ ମହିଳା ସେ । ଧନଜନରେ ପରିପୂର୍ଣ୍ଣ ଥାଇ ମଧ୍ୟ ସତ୍ୟକୁ, ନ୍ୟାୟକୁ, ଆଦର୍ଶକୁ ତ୍ୟାଗ କରି ନ ଥିଲେ କେବେ । ପାପୁ ଦେଇଙ୍କର ପ୍ରସବ ଯନ୍ତ୍ରଣା କଟକ ମେଡିକାଲରେ ଚାଲିଥାଏ । ତାଙ୍କର ସ୍ୱାମୀ କ୍ଷୀରୋଦବାବୁ ସେତେବେଳେ F. M. କଲେଜ ବାଲେଶ୍ୱରରେ । ରୁକ୍ମିଣୀ-ଦେବୀ ଡାକ୍ତରଖାନାରେ ଝିଅ ପାଖରେ । ଟେଲିଫୋନ କଲେ ପିଲାଟି ଗର୍ଭରେ ଖୁବ୍ ବଡ଼ ହୋଇଛି । ଲେଡି ଡାକ୍ତର ପ୍ରଫେସର ଜ୍ୟୋତ୍ସ୍ନା ଦେଇ କହୁଛନ୍ତି ଅପରେସନ ଆବଶ୍ୟକ । ସ୍ୱାମୀଜୀ ଟେଲିଫୋନ୍ ପାଇ ଲାଜକୁଳୀ ଗଛର ଚେର

ଖୋଜିବାରେ ବ୍ୟସ୍ତ । ଗଛକୁ ପୂଜା କରି ଚେର ଅଣାଗଲା । ସ୍ୱାମୀଜୀ ସେ ଚେରଟିକୁ ଧରି ଛୋଟ କତୁରିଟିଏ ଧରି ଡାକ୍ତରଖାନା ଗ୍ଲଲେ । ପ୍ରସୂତିଙ୍କ ଚୂଳରେ ଚେରଟି ଦିଆଯିବ ଏବଂ ପିଲା ପଡ଼ିବା ସଙ୍ଗେ ସଙ୍ଗେ ଚୂଳଟିକୁ କାଟିଦେଇ ଚେରଟି ଖସେଇ ଦେବାକୁ ପଡ଼ିବ । ନଚେତ୍ ଫୁଲ ନାଡ଼ ସବୁ ଖସି ପଡ଼ିବ ଏକାବେଳେକେ । ଏସବୁ ଯୋଗାଡ଼ ସ୍ୱାମୀଜୀଙ୍କ କାରର ଡ୍ରାଇଭର କାଳିନ୍ଦୀ ବାରିକ କରିଥିଲା । ଏତେ ବଡ଼ ଉଚ୍ଚ ଶିକ୍ଷିତ ବ୍ୟକ୍ତିଙ୍କର ପୁରାତନ ପଦ୍ଧତିକୁ କେତେ ସମ୍ମାନ ଓ ବିଶ୍ୱାସ ! ମାତ୍ର ପ୍ରସବ କିପରି ହେଲା ମନେ ନାହିଁ ମୋର ।

ସ୍ୱାମୀଜୀ ଥିଲେ ସମାଜ ସଂସ୍କାରକ । ନିଜର ପୁତ୍ର ଚିତ୍ତରଞ୍ଜନ ଦାସ (ବି. ଦାସଙ୍କ ଜ୍ୟେଷ୍ଠ ପୁତ୍ରଙ୍କୁ ସ୍ୱାମୀଜୀ ପୁତ୍ର କରି ନେଇଥିଲେ) ଇଂଜିନିୟର ବିଦେଶରୁ ଫେରିଲେ । ଏକ ଜିଦ୍ ତାଙ୍କର ଜଣେ କା ବିଦେଶୀ ବାଳିକାଙ୍କୁ ବିବାହ କରିବେ । ପରସ୍ପରକୁ ଭଲ ପାଇଛନ୍ତି ସେମାନେ । ବି. ଦାସ ଓ ରୁକ୍ମିଣୀଦେବୀ ନାରାଜ । ସ୍ୱାମୀଜୀ ଜିଦ୍ ଧରିଲେ ମୋ ପୁଅ ସେହି ଝିଅକୁ ବିବାହ କରିବ ଯଦି ସେ ସେଥିରେ ସୁଖୀ ହେବ । ବି. ଦାସଙ୍କୁ ଓ ଭଇ-ବୋହୂଙ୍କୁ ବୁଝାଇଲେ ଏବଂ ସେ କନ୍ୟା ହିନ୍ଦୁ ଧର୍ମରେ ଦୀକ୍ଷିତା ହେବା ପରେ ହିନ୍ଦୁ ମତେ ବିବାହ ସମ୍ପନ୍ନ ହେଲା ସ୍ୱାମୀଜୀଙ୍କ ପରାମର୍ଶରେ । ସେ ଡଗର ପଡ଼ାରେ ଅସହାୟା, ସମାଜ ପରିତ୍ୟକ୍ତା ଝିଅ ବୋହୂମାନଙ୍କ ପାଇଁ ଅନାଥାଶ୍ରମ ସ୍ଥାପନ କରି ନିଜେ ତାହାର ସମ୍ପାଦକ ରହି ବହୁ ଅର୍ଥ ଦାନ କରି ପରି-ଚାଳନା କରୁଥିଲେ । ଶତାଧିକ ଦୁଃସ୍ଥା, ସମାଜ ପରିତ୍ୟକ୍ତା କନ୍ୟାମାନଙ୍କୁ ଅନାଥାଶ୍ରମରେ ରଖି ଭଲ ବର ଦେଖି ସ୍ୱାମୀଜୀ ବିବାହ କରି ଦେଉଥିଲେ । ଆଶ୍ରମ ପରିଚାଳନା ସମ୍ବନ୍ଧରେ ଦୈନିକ ନିଶ୍ଚୟ ରୂପେ ଏକ ଘଣ୍ଟା ଆଶ୍ରମ ତତ୍ତ୍ୱାବଧାରକ ପୁଲିନ୍ ବାବୁଙ୍କୁ ପରାମର୍ଶ ତଥା ଉପଦେଶ ଦେଇଥିଲେ । ବର୍ତ୍ତମାନ କଟକରେ ଡଗରପଡ଼ାରେ ଉକ୍ତ ଅନାଥାଶ୍ରମ ସ୍ୱାମୀଜୀଙ୍କୁ ଅମର କରି ରଖି-ଅଛି । ସମାଜ ସଂସ୍କାରକ ସ୍ୱର୍ଗୀୟ ବୈରାଗୀ ମିଶ୍ର ସ୍ୱାମୀଜୀଙ୍କ ଠାରୁ ପରାମର୍ଶ ଓ ଆର୍ଥିକ ସାହାଯ୍ୟ ନିୟମିତ ରୂପେ ପାଉଥିଲେ ।

ରାଷ୍ଟ୍ରଭାଷା ହିନ୍ଦି ପ୍ରଚାର ସମିତିର ସେ ଥିଲେ ପ୍ରଧାନ ପୃଷ୍ଠପୋଷକ । ରାଷ୍ଟ୍ରଭାଷା ପ୍ରଚାର ସମିତିର ପରିଚାଳକ ସ୍ୱର୍ଗୀୟ ଅନସୂୟା ପ୍ରସାଦ ପାଠକ

ପ୍ରତିଦିନ ଆସି ସ୍ୱାମୀଜୀଙ୍କ ପରାମର୍ଶ ନେଉଥିଲେ । ଆବଶ୍ୟକ ସ୍ଥଳେ ଅର୍ଥ ମଧ୍ୟ ନେଉଥିଲେ । ଓଡ଼ିଶାରେ ରାଷ୍ଟ୍ରଭାଷା ପ୍ରଚାର କାର୍ଯ୍ୟରେ ସ୍ୱାମୀଜୀ ଓ ଡାକ୍ତର ମହତାବଙ୍କର ଅବଦାନ ଅତୁଳନୀୟ । ପାଠକ ମହାଶୟ ସ୍ୱାମୀଜୀଙ୍କୁ ଥଟ୍ଟା କରନ୍ତି–"ଯେଉଁ ଅନୁଷ୍ଠାନରେ ସ୍ୱାମୀଜୀ ନାହାନ୍ତି–ସେ ଅନୁଷ୍ଠାନର ସ୍ୱାମୀ ନାହିଁ ।" ସ୍ୱାମୀଜୀ ହସନ୍ତି । ଉଭୟଙ୍କର ଭାବର ଆଦାନ ପ୍ରଦାନ ମଧୁମୟ ଥିଲା । ବହୁ ଦୁଃଖୀ ରଙ୍କୀଙ୍କୁ ସ୍ୱାମୀଜୀ ସାହାଯ୍ୟ କରୁଥିଲେ । ଅବାରିତ ଭାବେ ଯେ କୌଣସି ଛାତ୍ରକୁ ପ୍ରଶଂସାପତ୍ରଠାରୁ ଅର୍ଥ ପର୍ଯ୍ୟନ୍ତ ସାହାଯ୍ୟ ଦେଇ ଅଧ୍ୟୟନ ତଥା ଚାକିରି କରାଇ ଦେବାରେ ସ୍ୱାମୀଜୀ ପ୍ରାତଃ ସ୍ମରଣୀୟ । ଅନ୍ୟମାନଙ୍କ ପରି ଖଣ୍ଡେ ପ୍ରଶଂସାପତ୍ର ଦେବାକୁ ସ୍ୱାମୀଜୀ କାହାରିକୁ ବାରବାର ଦଉଡ଼ାଉ ନଥିଲେ । ସେ କାହାରି ପ୍ରତି ବିରକ୍ତ ହେଲେ ମୃଦୁଭର୍ତ୍ସନା କରି ଶାସନ କରୁଥିଲେ ଏବଂ ନିଜ ସମାସ୍କନ୍ଧ ବନ୍ଧୁମାନଙ୍କ ସହିତ ମତାନ୍ତର ହେଲେ ସେ ତାହାକୁ କେବେ ମନାନ୍ତରରେ ପରିଣତ ନକରି ସୌଜନ୍ୟପୂର୍ଣ୍ଣ ବ୍ୟବହାର ଦେଇ ଦୂରେଇ ରହୁଥିଲେ । ବହୁ କ୍ଷେତ୍ରରେ ବହୁ ଲୋକଙ୍କ ସହିତ ତାଙ୍କର ମତାନ୍ତର ହେଉଥିଲା ମାତ୍ର ମନାନ୍ତର ନୁହେଁ, ବା ଆଜିକାଲି ପରି କାହାରିକୁ ଅସମ୍ମାନ ଦେବା, ସମାଲୋଚନା କରିବା, କୁତ୍ସାରଟନା କରିବା ଇତ୍ୟାଦିର ସେ ବହୁ ଦୂରରେ ଥିଲେ । ରାଜନୀତି ଓ ଆଇନ୍ ବ୍ୟବସାୟରେ ସେ ମଧୁବାରିଷ୍ଟରଙ୍କର ଅନୁଗାମୀ ହୋଇ ତାଙ୍କର ଆଚରଣକୁ ଅନୁକରଣ କରି କାର୍ଯ୍ୟ କରୁଥିଲେ । ସ୍ୱାମୀଜୀଙ୍କର ପତ୍ନୀ ବିୟୋଗ ପରେ ତାଙ୍କୁ ଦ୍ୱିତୀୟ ପତ୍ନୀ ଗ୍ରହଣ ପାଇଁ ପ୍ରବର୍ତ୍ତାଇବାରେ ଆତ୍ମୀୟ ସ୍ୱଜନ ପରାସ୍ତ ହୋଇ ମଧୁବାରିଷ୍ଟରଙ୍କ ଦ୍ୱାରା ସ୍ୱାମୀଜୀଙ୍କ ଉପରେ ଚାପ ପକାଇଥିଲେ । ମାତ୍ର ସ୍ୱାମୀଜୀ ମି. ଦାସଙ୍କୁ ଉତ୍ତର ଦେଇଥିଲେ, "ସାର୍ ମୋ ସ୍ତ୍ରୀ ଯଦି ବିଧବା ହୋଇଥିବେ ଆପଣ ତାଙ୍କୁ ନିଜେ ବା ଏ ସମାଜ ଓ ମୋର ଆତ୍ମୀୟମାନେ ଦ୍ୱିତୀୟ ସ୍ୱାମୀ ଗ୍ରହଣ କରିବାକୁ ପରାମର୍ଶ ଦେଇଥାନ୍ତେ କି ?" ମି· ଦାସ ପରାସ୍ତ ହୋଇ ଆଶୀର୍ବାଦ କରିଥିଲେ ।

ସ୍ୱାମୀଜୀ ସ୍ୱାଧୀନତା ସଂଗ୍ରାମରେ କାରାବରଣ କରିଥିଲେ କି ନା ମୁଁ ଜାଣିନାହିଁ । ମାତ୍ର ବହୁ କର୍ମୀ, ନେତୃବର୍ଗ ଆଦିଙ୍କୁ ସେ ନିଜ ଗୃହରେ ବାସ ଦେବାଠାରୁ ବିପୁଳ ଆର୍ଥିକ ସାହାଯ୍ୟ ଦେବା, ସେମାନଙ୍କ ତରଫରୁ କୋର୍ଟରେ ଲଢ଼ିବା ଆଦି କାର୍ଯ୍ୟ କରିବାରେ ଅଗ୍ରଣୀ ଥିଲେ । ସ୍ୱର୍ଗୀୟ ଗୋପବନ୍ଧୁ ଚୌଧୁରୀ,

ନବକୃଷ୍ଣ ଚୌଧୁରୀ, ରମାଦେବୀ, ମାଳତୀ ଦେବୀ ଆଦି ନେତା ଓ ନେତ୍ରୀମାନେ ସ୍ୱାମୀଜୀଙ୍କର ପରମ ପ୍ରିୟ ଥିଲେ । ଭୂଦାନ ପ୍ରଚାରରେ ଗୋପବନ୍ଧୁ ଚୌଧୁରୀ ସଦଳବଳ ନେଇ ସ୍ୱାମୀଜୀଙ୍କ ଡଗରପଡ଼ା ବାସଭବନରେ ମାସାଧିକ କାଳ ରହିବାରେ ସ୍ୱାମୀଜୀଙ୍କର କିଭଳି ଅର୍ଥବ୍ୟୟ ହେଉଥିଲା ତାହା କେବଳ ଦେଖିଲା ଶୁଣିଲା ବ୍ୟକ୍ତି କହିବେ । ଆଚାର୍ଯ୍ୟ ହରିହର ମହାଶୟ ଓ ସ୍ୱାମୀଜୀଙ୍କର କୋଳାକୋଳି ଏବଂ ଗୋପବନ୍ଧୁ ଚୌଧୁରୀ ଓ ସ୍ୱାମୀଜୀଙ୍କର ଥଟ୍ଟା ପରିହାସ କେଡ଼େ ଭାବପୂର୍ଣ୍ଣ ଓ ମଧୁର ଯାହା ଅନ୍ୟତ୍ର ବିରଳ ।

ଆଇନ୍ ବ୍ୟବସାୟରେ ସ୍ୱାମୀଜୀଙ୍କ ନାମ ଓଡ଼ିଶା ତଥା ଭାରତ ବିଖ୍ୟାତ । ଜମିଜମା ସଂକ୍ରାନ୍ତ ଆଇନ୍‌ରେ ସ୍ୱାମୀଜୀ ଅତି ବିଚକ୍ଷଣ ଆଇନଜ୍ଞ ଥିଲେ । ପ୍ରଥମ ଓଡ଼ିଶା ହାଇକୋର୍ଟର ପ୍ରଥମ ପ୍ରଧାନ ବିଚାରପତି ସ୍ୱର୍ଗୀୟ ବୀରକିଶୋର ରାୟ ସ୍ୱାମୀଜୀଙ୍କର ଘନିଷ୍ଠ ବନ୍ଧୁ ଥିଲେ । ବନ୍ଧୁ ଓ ବନ୍ଧୁପତ୍ନୀଙ୍କ ସହ କିପରି ବ୍ୟବହାର କରାଯାଏ ତାହା ବୀରବାବୁ ଓ ଲତିକା ଦେବୀଙ୍କ ସହିତ ସ୍ୱାମୀଜୀଙ୍କ ସାକ୍ଷାତ୍‌କାରରୁ ଶିଖିବାର କଥା । ବନ୍ଧୁଙ୍କର ସନ୍ତାନ ସନ୍ତତିମାନଙ୍କ ପ୍ରତି କିପରି ଭାବାଦାନ କରାଯାଏ ତାହା ସ୍ୱର୍ଗୀୟ ଡାକ୍ତର ଆଇଜାକ୍ ସାମନ୍ତରାଙ୍କ ପୁତ୍ର ଡାକ୍ତର ଦିଲୀପ ଓ କନ୍ୟା ବିଦ୍ୟୁତ୍‌ପ୍ରଭା ସାମନ୍ତରା ଏବଂ ଗୋପବନ୍ଧୁ ଚଉଧୁରୀଙ୍କ ପୁତ୍ର ମନମୋହନ ଚଉଧୁରୀ ଓ କନ୍ୟା ଅନ୍ନପୂର୍ଣ୍ଣା ମହାରଣାଙ୍କ ସହ ସ୍ୱାମୀଜୀଙ୍କର ଆଳାପ ଆଲୋଚନାରୁ ଦର୍ଶନୀୟ ତଥା ଶିକ୍ଷଣୀୟ । ସ୍ୱର୍ଗୀୟ ଗିରିଧାରୀ ଧଳ, ଦାମୋଦର ମହାନ୍ତି, ଶ୍ରୀକାନ୍ତ ମହାନ୍ତି, ସତୀଶ ଚନ୍ଦ୍ର ଚକ୍ରବର୍ତ୍ତୀ, ଶ୍ୟାମାଚରଣ ଦାସ ଆଦି ବହୁ ସ୍ୱନାମଧନ୍ୟ ଆଇନଜ୍ଞମାନେ ସ୍ୱାମୀଜୀଙ୍କର ଜୁନିୟର ଭାବେ ଓକିଲାତି ବ୍ୟବସାୟ କରି ଯଶସ୍ୱୀ ହୋଇଥିଲେ । କନିଷ୍ଠ ଜୁନିୟରମାନଙ୍କୁ ସେ ଠିକ୍ ସନ୍ତାନ ପରି ତାକିଦ କରୁଥିଲେ । କେବଳ ଆଇନ କଥା ନୁହେଁ ଅନ୍ୟାନ୍ୟ ବହୁ ବିଷୟରେ ସ୍ୱାମୀଜୀ ସେମାନଙ୍କୁ ମହତ ଉପଦେଶ ଦେଉଥିଲେ । ଏକଦା ଜନୈକ ଜୁନିୟର ଓକିଲ ସୀତାକାନ୍ତ ପଟ୍ଟନାୟକ ହାଓ୍ୱାଇ ସାର୍ଟ ପିନ୍ଧି ଗଳା ବୋତାମ ଖୋଲା ରଖି ସ୍ୱାମୀଜୀଙ୍କ ଅଫିସକୁ ଆସିଥିବାରୁ ସେ ତାଙ୍କୁ ହସି ହସି ବହୁ ଦୃଷ୍ଟାନ୍ତ ଦେଇ ମୃଦୁ ଭର୍ତ୍ସନା କରିଥିଲେ ଏବଂ ନିଜେ କିପରି ତାଙ୍କର ସିନିୟର ମଧୁ ବାରିଷ୍ଟରଙ୍କ ଅଫିସକୁ ଯାତାୟାତ କରୁଥିଲେ, ମଧୁ ବାରିଷ୍ଟର କିପରି

ଭବରେ ତାଙ୍କର ଜୁନିୟର ଓକିଲମାନଙ୍କ ପ୍ରତି ଦୃଷ୍ଟି ରଖୁଥିଲେ ସେ ତାହା ବୁଝାଇ ଥିଲେ । ମଧୁ ବାରିଷ୍ଟରଙ୍କର ବହୁ ଜୁନିୟରଙ୍କ ମଧ୍ୟରେ ସେ ନିଜେ, ରାୟ-ବାହାଦୁର ଚିନ୍ତାମଣି ଆଚାର୍ଯ୍ୟ ଓ ସ୍ୱର୍ଗୀୟ ପାରେଶ୍ୱର ମହାନ୍ତି ଏହି ତିନି ବନ୍ଧୁ ସିନିୟରଙ୍କ ପ୍ରିୟ ହେବାପାଇଁ ନିଜ ମଧ୍ୟରେ କିପରି ପ୍ରତିଦ୍ୱନ୍ଦ୍ୱିତା କରି ଲକ୍ଷ୍ୟ ହାସଲ କରୁଥିଲେ ତାହା ମଧ୍ୟ ସୀତାକାନ୍ତ ବାବୁଙ୍କୁ ବୁଝାଇଥିଲେ । ଆଇନ୍ ବ୍ୟବସାୟରେ କଳାକୁ ଧଳା ଅର୍ଥାତ୍ ମିଥ୍ୟାକୁ ସତ୍ୟ ଏବଂ ଧଳାକୁ କଳା, ସତ୍ୟକୁ ମିଥ୍ୟା ବୋଲି ପ୍ରମାଣ କରାଇବା ଆଇନଜ୍ଞମାନଙ୍କର ବିଚକ୍ଷଣତା ବୋଲି କୁହାଯାଏ । ମାତ୍ର ସ୍ୱାମୀଜୀ ଥିଲେ ଅନ୍ୟ ପ୍ରକାର ଆଇନଜ୍ଞ । ମୋକଦ୍ଦମାଟି ମିଥ୍ୟା ବୋଲି ଜାଣିଲେ ସେ ଫେରାଇ ଦେଉଥିଲେ । ମିଥ୍ୟା ମୋକଦ୍ଦମା କରିବାକୁ ଲୋକେ ପ୍ରାୟ ତାଙ୍କ ନିକଟକୁ ଯାଉ ନ ଥିଲେ କି ଯିବାକୁ ସାହସ କରୁନଥିଲେ । ମିସଲରେ ଜଜ୍‌ମାନଙ୍କୁ ସମ୍ମାନର ସହ ମଧୁର ଭାଷାରେ ନିଜର ବଳିଷ୍ଠ ଯୁକ୍ତି ବାଢ଼ୁଥିଲେ । ତାଙ୍କର ଯୁକ୍ତି ଆଇନଯୁକ୍ତ ଏବଂ ଯଥାଯଥ ସଠିକ୍ ହେଉଥିଲା । ଅଯଥା ବକ୍ତବ୍ୟର ସେ ପକ୍ଷପାତୀ ନ ଥିଲେ । ଅଳ୍ପ କହୁଥିଲେ ଏବଂ ତଥ୍ୟ ପୂର୍ଣ୍ଣ ଯୁକ୍ତିଯୁକ୍ତ କଥା କହୁଥିଲେ । ମିଥ୍ୟା ମୋକଦ୍ଦମା ଯେପରି ନେଉ ନଥିଲେ ମିଥ୍ୟା ଯୁକ୍ତି ମଧ୍ୟ କରୁନଥିଲେ । ଅପରପକ୍ଷର ଓକିଲଙ୍କ ପ୍ରତି ତାଙ୍କର ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର ସମସ୍ତଙ୍କୁ ମୁଗ୍ଧ କରୁଥିଲା । ତାଙ୍କ ସମୟରେ ସମ୍ମାନୀୟ ବନ୍ଧୁଙ୍କୁ ସମ୍ମାନ ଦେବା ଓ କନିଷ୍ଠ ଓକିଲମାନଙ୍କୁ ପିତୃତୁଲ୍ୟ ସସ୍ନେହ ବ୍ୟବହାର ଦେବା ତାଙ୍କର ଆଚରଣ ଥିଲା । ହାଇକୋର୍ଟ ବାରରେ ସତ୍ୟନାରାୟଣ ସେନଗୁପ୍ତ, ଲଳିତ କୁମାର ଦାସଗୁପ୍ତ, ବାଞ୍ଛାନିଧି ମହାପାତ୍ର, ଗୋପାଳ ଚରଣ ଦାସ, ହରିହର ମହାପାତ୍ର, ଗଜକିଶୋର ଦାସ ଆଦି ସିନିୟର ଓକିଲମାନେ ସ୍ୱାମୀଜୀଙ୍କ ପାଖରେ ବସୁଥିଲେ, ଯେଉଁମାନେ କି ପ୍ରାୟ ସ୍ୱାମୀଜୀଙ୍କ ବିପକ୍ଷ ପକ୍ଷର ଓକିଲ ରହୁଥିଲେ । ମାତ୍ର ସମସ୍ତେ ଥିଲେ ତାଙ୍କର ବନ୍ଧୁ । ଘରେ ବା କଚେରିରେ ସେ କେବେ ଏକୁଟିଆ ଖାଉନଥିଲେ । ଦିନ ଘ୧।୩୦ରେ ହାଇ-କୋର୍ଟ ବାରରେ ତାଙ୍କ ଖାଇବା ଟେବୁଲରେ ଅନ୍ୟଜଣେ ନବସିଲେ ସେ ଖାଇ ପାରନ୍ତି ନାହିଁ । ଯେଉଁ ଓକିଲ ବନ୍ଧୁ ସେ ପାଖ ଦେଇ ଯିବେ ତାଙ୍କୁ ସେ ନିଶ୍ଚୟ ଡାକି ପାଖରେ ବସାଇ ଖୋଇବେ । ଖାଦ୍ୟ ଭିତରେ ନାଲି ଗୁଡଳର ଭାତ ସାତ ଆଠ ଗ୍ଲାସ, ରୁଟି ୨ପଟ, ସାଧା ଝୋଳ ତରକାରି, ଶାଗ ନିଶ୍ଚୟ

ପ୍ରତିଦିନ, କେବେ ବା ପାମ୍ପଡ଼ ଖଣ୍ଡେ, ଭଜାଟିକେ । ଏ ହେଲା ମଧ୍ୟାହ୍ନର ଖାଦ୍ୟ । ସକାଳେ ଘରେ କଳା ରଙ୍ଗର, ଦହି ମିଶା ମାଣ୍ଡିଆ ଯାଉ, ବରା ୨ଟି, କଦଳୀ ଗୋଟିଏ । ରାତିକୁ ଦୁଧ ଏକ କପ୍ । ଗ୍ରରିଟାବେଳେ କଚେରିରୁ ଫେରି କଫି ବା ହରଲିକ୍ସ ଏକ କପ୍ । ବିଖ୍ୟାତ ଓକିଲ, ପୁଣି ଓଡ଼ିଶାର ଏଡ୍‌ଭୋକେଟ୍ ଜେନେରାଲ ହୋଇ ମଧ୍ୟ କି ସରଳ ଜୀବନ ଯାପନ । ଏଇତ ବୈରାଗ୍ୟ ଏଇତ ସନ୍ନ୍ୟାସ । ବହୁ ଦୀନଦରିଦ୍ର ଓ ଅସହାୟା ବିଧବା ପିତୃମାତୃହୀନ ବାଳକ ବାଳିକାଙ୍କର ଦୁର୍ଦ୍ଦିନର ସହାୟ ଓକିଲ ସ୍ୱାମୀଜୀ । ବିନା ପାରିଶ୍ରମିକରେ ଲଢ଼ି ମୋକଦ୍ଦମାରେ ଜିତାଇ ଦିଅନ୍ତି । କାହାକୁ କେମିତି ବା ପକେଟରୁ ପଇସା ଦିଅନ୍ତି ଯାତାୟାତ ପାଇଁ । ଲିଙ୍ଗରାଜ ମହାପ୍ରଭୁ, ବାଣପୁରର ଭଗବତୀ, ବାଙ୍କୀର ଚର୍ଚ୍ଚିକା ମନ୍ଦିର ଟ୍ରଷ୍ଟି ବୋର୍ଡରେ ସ୍ୱାମୀଜୀ, ଓକିଲ, ପରିଚାଳନା କମିଟି ସଦସ୍ୟ, କେଉଁଠାରେ ବା ଚେୟାରମ୍ୟାନ । ଅଗଣିତ ପଣ୍ଡା ପଢ଼ିଆରୀ ଦିଅଁ ଦେବୀଙ୍କର ଭୋଗଧରି ଦୌଡ଼ନ୍ତି । ସମ୍ବଲପୁରର ମହକିଲ, ଗଙ୍ଗାଧର ମେହେରଙ୍କ ସାହିତ୍ୟ ଯଦି କେହି ଗାଇ ଶୁଣାଇଲା ତାଙ୍କୁ ଫିସ ଛାଡ଼ି ଦେଇ ବନ୍ଧୁ କରି ନିଅନ୍ତି । ନିମ୍ନ କୋର୍ଟର ଓକିଲମାନଙ୍କ ପ୍ରତି– ଯଥେଷ୍ଟ ଗୁଣ ଦେଖିଲେ ଗୁଣମୁଗ୍ଧ ସ୍ୱାମୀଜୀ ବନ୍ଧୁ କରି ନିଅନ୍ତି । ବାଲେଶ୍ୱରର ଉପେନ୍ଦ୍ରନାଥ ଘୋଷ, ଗୁରୁଚନ୍ଦ୍ର ରାୟ, ଭଦ୍ରକର ନରବାବୁ ଆଦି ତାଙ୍କର ପରମ ବନ୍ଧୁ ଥିଲେ; କେବଳ ସେମାନେ ଭଲ ଅର୍ଜୀ ଜବାବ କରନ୍ତି ବୋଲି । କେତେ ପ୍ରଶଂସା କରନ୍ତି ସେମାନଙ୍କୁ । ଗୁଣଗ୍ରାହୀ ସ୍ୱାମୀଜୀ ଗୁଣର ପୂଜାରୀ ଥିଲେ ।

ଆଇନ ବ୍ୟାବସାୟରେ ବହୁ ରଜା ଜମିଦାର ତାଂକର ମହକିଲ ଥିଲେ ହେଁ ଅର୍ଥ ବଳରେ କେହି ତାଙ୍କୁ ବାନ୍ଧିପାରେନା । ମୟୂରଭଞ୍ଜର ମହାରାଣୀ କୁମାରୀ ଦେବୀ (ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କ ସ୍ତ୍ରୀ)ଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ଭବାନୀ ବାବୁଙ୍କର ସାମାନ୍ୟ ତ୍ରୁଟିପୂର୍ଣ୍ଣବାକ୍ୟ ଯୋଗୁଁ ସ୍ୱାମୀଜୀ କିପରି ବର୍ଷାଧିକକାଳ ତାଂକ ଫାଇଲପତ୍ର ଫେରାଇ ଦେଇଥିଲେ ତାହା ତାଂକ ମର୍ଯ୍ୟାଦାପୂର୍ଣ୍ଣ ଆଇନ ବ୍ୟବସାୟର ଜ୍ୱଳନ୍ତ ଦୃଷ୍ଟାନ୍ତ । ତତ୍କାଳୀନ ପାରିକୁଦ ରଜା, ମହନ୍ତ ମହାରାଜ ଏମାର ମଠ ଆଦି ମହକିଲମାନେ ଖୁବ୍ ସତର୍କତାର ସହ ସ୍ୱାମୀଜୀଙ୍କୁ ମକଦ୍ଦମା ବୁଝାନ୍ତି । କଥା କହିବାରେ ତ୍ରୁଟି ଘଟିଲେ ଅବସ୍ଥା ଅସମ୍ଭାଳ । ମାତ୍ର ସେହି ସ୍ୱାମୀଜୀ ଗରିବ ମଳିମୁଣ୍ଡିଆର ଥଟ୍ଟା

ପରିହାସକୁ ଉପଭୋଗ କରିଥାନ୍ତି । କି ମହାନ୍ ଓ ବିଚିତ୍ର ଆଚରଣ ବିଚିତ୍ରାନନ୍ଦଂକର ।

ବଡ଼ ବଡ଼ ଓଷାବାରରେ ଜୁନିୟର ଓକିଲମାନଙ୍କୁ ପାଖରେ ବସାଇ ଖୁଆଇବାରେ ସେ ବହୁତ ଆନନ୍ଦ ପାଆନ୍ତି । ଜୁନିୟରମାନେ ମହକିଲଙ୍କ ପାଖରୁ ତାଙ୍କର ପ୍ରାପ୍ୟ ପାଇଲେ କି ନା ବରାବର ଧ୍ୟାନ ଦେଇଥାନ୍ତି । ଅଭାବ ହେଲେ ନିଜ ଫିସରୁ ଜୁନିୟରଙ୍କୁ ଦେଇ ମହକିଲଙ୍କ ଉପରେ ବାକି ରଖନ୍ତି । ଜୁନିୟର ଓ ଅନ୍ୟାନ୍ୟ କର୍ମଚାରୀଙ୍କ ପ୍ରାପ୍ୟ ପ୍ରତି ଯଥେଷ୍ଟ ଧ୍ୟାନ ଦେଇ ସେମାନଙ୍କର ଚାଲିଚଳନ ତଥା ଆର୍ଥିକ ଅନଟନ ପ୍ରତି ଦୃଷ୍ଟି ରଖିବା ତାଂକ ବ୍ୟବସାୟର ଅନ୍ୟ ଏକ ଅଙ୍ଗ ଥିଲା । ଥରେ ସ୍ୱାମୀଜୀଂକର ଜଣେ ମହକିଲ ତାଂକର ଅପରପକ୍ଷ ଓକିଲଙ୍କ କୃପାପ୍ରାପ୍ତ ହୋଇ ଉଭୟ ପକ୍ଷର ରଫାନାମା ପ୍ରସ୍ତୁତି ବେଳେ ନିଜେ କିଛି ଅଧିକ ଜମି ହାସଲ କରିନେବାର ଚେଷ୍ଟା କରିଥିଲେ । ରଫାନାମା ଯେତେବେଳେ ସ୍ୱାମୀଜୀଙ୍କ ଦୃଷ୍ଟିକୁ ଆସିଲା ସେ ନିଜେ ଟେଲିଫୋନ୍ କରି ଓକିଲ ବନ୍ଧୁଙ୍କୁ ଡାକିଲେ । ସେ ଆସିବାରୁ ଅତି ଭଦ୍ରଭାବରେ ମଧୁର ଭାଷାରେ ତାଙ୍କୁ ବୁଝାଇ ଦେଲେ ଏପରି ଅପକର୍ମ ଏ ବ୍ୟବସାୟକୁ ଶୋଭନୀୟ ନୁହେଁ, ଅଧର୍ମ ମଧ୍ୟ । ଓକିଲର ଧର୍ମ ନ୍ୟାୟ ଓ ସୁବିଚାର ଏବଂ ସତ୍ୟ ଓ ନ୍ୟାୟରେ ମହକିଲର ସ୍ୱାର୍ଥରକ୍ଷା । ବନ୍ଧୁଜଣକ ନୀରବ ରହିଲେ ମନେ ମନେ ଅପମାନିତ ହୋଇ । ସେ ଗଲାପରେ ହେଲା ମହକିଲଙ୍କୁ ଗାଳି । ଶେଷରେ ରଫାନାମା ସଂଶୋଧନ ହୋଇ ଦାଖଲ ହେଲା । ମାତ୍ର ସ୍ୱାମୀଜୀ ଦସ୍ତଖତ କଲେ ନାହିଁ । ଜଣେ ଜୁନିୟରଙ୍କ ଦସ୍ତଖତରେ ମୋକଦ୍ଦମା ଫଏସଲା ହେଲା । ଆଉ ସେ ମହକିଲ ଦିନକ ପାଇଁ ସ୍ୱାମୀଜୀଙ୍କ ଅଫିସ୍ ମାଡ଼ି-ନାହାନ୍ତି । କେଡ଼େ ସଚ୍ଚୋଟ ଆଇନଜ୍ଞ ସେ । ଏ ମହକିଲ ଅବଶ୍ୟ ଜଣେ ଧନୀ ମହାଜନ ଥିଲେ ।

କୁଷ୍ଠରୋଗୀମାନଙ୍କ ସେବାରେ ତାଙ୍କର ଯଥେଷ୍ଟ ଅବଦାନ ଥିଲା । ସ୍ୱାମୀଜୀ ପ୍ରତିବର୍ଷ ଗ୍ରୀଷ୍ମାବକାଶରେ ସମ୍ବଲପୁର ଜିଲ୍ଲାର ହାତୀବାରି କୁଷ୍ଠାଶ୍ରମ ପରିଦର୍ଶନ କରନ୍ତି । ପରିଚାଳକ ଡାକ୍ତର ଆଇଜାକ୍ ସାମନ୍ତରା ଥିଲେ ତାଙ୍କର ବନ୍ଧୁ । କଟକରୁ ଅନେକ କୁଷ୍ଠରୋଗୀଙ୍କୁ ହାତରୁ ଗାଡ଼ିଖର୍ଚ୍ଚ ଦେଇ ସେ ହାତୀ-

ବାରି ପଠାଇ ସେମାନଙ୍କୁ ଆରୋଗ୍ୟ କରଉଥିଲେ । ପରୋପକାର, ସମାଜ ଓ ଦେଶର ସେବା ଥିଲା ସ୍ୱାମୀଜୀଙ୍କର ବ୍ରତ ।

ଆଇନ ଅଦାଲତରେ ସେ ଲେଖୁଥିଲେ ବି. ଏନ୍. ଦାସ, ଏଡ୍‌ଭୋକେଟ୍ ବୋଲି, ମାତ୍ର ସର୍ବତ୍ର ପରିଚିତ ଥିଲେ ସ୍ୱାମୀ ବିଚିତ୍ରାନନ୍ଦ ଦାସ ନାମରେ । କଟକରେ ସ୍ୱାମୀଜୀ କହିଲେ ତାଙ୍କୁ ହିଁ ବୁଝାଉଥିଲା ।

ଆତ୍ମ ମର୍ଯ୍ୟାଦା ତାଙ୍କର ଅନ୍ୟ ଏକ ବିଶିଷ୍ଟ ଗୁଣ ଥିଲା । ଏକଦା ଭୁବନେଶ୍ୱରରୁ ଫେରୁଥାନ୍ତି ନିଜ ଆମ୍ବାସଡ଼ର କାର୍‌ରେ । ବାଟରେ କାର୍ ଖରାପ ହେଲା । କଟକ ଆସୁଥିବା ବସରେ ଆସିଲେ ସ୍ୱାମୀଜୀ । ଗନ୍ତବ୍ୟସ୍ଥଳୀ ବସଷ୍ଟାଣ୍ଡରେ ଓହ୍ଲାଇ ଡ୍ରାଇଭରଙ୍କୁ ଡାକି ସସ୍ନେହରେ ପାଞ୍ଚଟି ଟଙ୍କା ଡ୍ରାଇଭର ହାତକୁ ବଢ଼ାଇ ଦେଇ କହିଲେ, "ନିଅ ଜଳଖିଆ ଖାଇବ ।" ଡ୍ରାଇଭର ଜଣକ ଚିହ୍ନନ୍ତି ତାଙ୍କୁ । ଭୟରେ ପଛକୁ ହଟିଯାଇ କହିଲେ, "ସାର୍ ମୁଁ ସରକାରୀ ଚାକିରିଆ ଦରମା ପାଉଛି ।" ସ୍ୱାମୀଜୀ ଡ୍ରାଇଭର ବାବୁଙ୍କ କାନ୍ଧରେ ହାତ ପକାଇ ଦେଇ କହିଲେ, "ଏ ତୁମର ବକସିସ୍, ଘୁସ୍ ନୁହେଁ ।" ଡ୍ରାଇଭର ପ୍ରଣତି ହୋଇ ଦୁଇ ହାତ ବଢ଼ାଇ ନୋଟ୍ ଖଣ୍ଡିକ ଗ୍ରହଣ କଲେ । କି ମହାନୁଭବତା । ଆଇନର ମର୍ଯ୍ୟାଦା ତଥା ଆଇନଜ୍ଞ ଓ ବିଚାରପତିମାନଙ୍କର ସମ୍ମାନକୁ ଅକ୍ଷୁଣ୍ଣ ରଖି ସେ ସର୍ବଦା ନିଜର ଆଇନ ବ୍ୟବସାୟ ଚଳାଉଥିଲେ । ଜୁନିଅର ଓକିଲ-ମାନଙ୍କୁ କହୁଥିଲେ, "ମନେରଖ, you are a member of the Bar. ନିଜକୁ ହୀନ ମନେ କରନା ବା ଅସତ୍ ଉପାୟରେ ଧନ ଅର୍ଜନ କରି ଯଶ କମାଇବାକୁ ଚେଷ୍ଟା କରନା । ଧନ ଓ ଯଶ ତୁମ ପଛରେ ଗୋଡ଼ାଇବ ତୁମେ ଯଦି ସତ୍ୟନିଷ୍ଠ ଓ କର୍ତ୍ତବ୍ୟ ପରାୟଣ ହେବ ।" ତାଙ୍କ ପରି ଓକିଲ, ତାଙ୍କ ପରି ମଣିଷ, ତାଙ୍କ ପରି ତ୍ୟାଗୀ, ଦେଶସେବକ, ଜାତୀୟବାଦୀ, ପରୋପକାରୀ ଦୀନ ଦୁଃଖୀ ମଣିଷଟିଏ ଆଜିକାର ସମାଜରେ ବିରଳ । ପ୍ରକୃତରେ ସେ ଥିଲେ "ସ୍ୱାମୀଜୀ ।"

"ନବା-କୁଶା", ପରସ୍ପର ଭାଇ ଭାଇର ଡାକ । ଅଭେଦ ସ୍ନେହ ସ୍ମରଣ କରାଇ ଦେଉଥିଲା ରାମାୟଣର ଲବ କୁଶ ଦୁଇଭାଇଙ୍କ କଥା । ଜ୍ୟେଷ୍ଠଭ୍ରାତା

ରାଘବାନନ୍ଦ ଦାସ, ସବ୍‌ଡେପୁଟି ଅକାଳରେ ମୃତ୍ୟୁ ବରଣ କରିଥିଲେ । ତା’ ପରେ ଗଲେ ବି. ଦାସ, ରୁକ୍ମିଣୀ ଦେବୀ ଓ ସ୍ୱାମୀଜୀ । ଡଗର ପଡ଼ାର ସେହି ହଳଦିଆ କୋଠାଟି ଦୀନ ଦୁଃଖୀଙ୍କ ପାଇଁ ସ୍ମୃତିସ୍ତମ୍ଭ ହୋଇ ରହିଗଲା । ଆମ ପାଇଁ ବି. ଏନ୍ .ଦାସ ଓ ବି. ଦାସ ଆଦର୍ଶ ମାନବ ରୂପେ ମାନସ ପଟରେ ରହିଗଲେ । ସେହି ମହାନ୍ ଆତ୍ମାକୁ ସ୍ମରଣ କରି ମୋର ବିନମ୍ର ନିବେଦନ ଓ ପ୍ରଣତି ଜଣା-ଉଛି ଉଭୟଙ୍କ ଚରଣରେ ।

–୦–

ଧବଳଗିରି
ପୋ: ଅ:–ଯାଜପୁରରୋଡ୍
ଜି: କଟକ ।

# ଉଦାର, ସଂସ୍କୃତ, ସୌଜନ୍ୟ ମଣ୍ଡିତ
# ସ୍ୱାମୀ ବିଚିତ୍ରାନନ୍ଦ ଦାସ

ଶ୍ରୀ ଦୀନବନ୍ଧୁ ପତ୍ରୀ

ପୃଥିବୀରେ ଏଭଳି ଖୁବ୍ କମ୍ ଲୋକ ଦେଖାଯାନ୍ତି ଯେଉଁମାନେ କି ନିଜର ଜୀବନକାଳରେ ଏଭଳି ସତ୍‌କର୍ମ କରିଥାନ୍ତି, ଯେଉଁମାନଙ୍କୁ ସମାଜର ଦାୟାଦମାନେ ସ୍ମରଣ କରନ୍ତି । ଆଉ କେତେକ ଲୋକ ଅଛନ୍ତି, ଯେଉଁମାନଙ୍କର ଅମର ଜୀବନକୁ ଐତିହାସିକମାନେ ଲିପିବଦ୍ଧ କରି ରଖନ୍ତି ସମାଜ ପାଇଁ ।

ଆମର ଉତ୍କଳ ଭୂଖଣ୍ଡରେ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଏଇଭଳି ଏକ ମନୀଷୀ ଥିଲେ । ସେ କୌଣସି କ୍ଷମତା ରାଜନୀତିରେ ପ୍ରବେଶ ନ କରିଥିଲେ ହେଁ ନିଜର ଅସାଧାରଣ ବ୍ୟକ୍ତିତ୍ୱ ବଳରେ ଲୋକୋତ୍ତର ମାନବିକତା ଲାଭ କରି ଚିରସ୍ମରଣୀୟ ହୋଇ ପାରିଛନ୍ତି ।

ନିକଟ ଅତୀତରେ ସେ ଥିଲେ ଓଡ଼ିଶା ହାଇକୋର୍ଟର ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ଜେନେରାଲ । ତାଙ୍କର ଯମଜ କିନ୍ତୁ କନିଷ୍ଠ ବୋଲାଉଥିବା ଭ୍ରାତା ସ୍ୱର୍ଗୀୟ ଭୁବନାନନ୍ଦ ଦାସ । ଭୁବନାନନ୍ଦ ବାବୁ ଆମମାନଙ୍କର ପାର୍ଲାମେଣ୍ଟ ସଦସ୍ୟ ଥିଲେ । ସେ ଥିଲେ ବହୁ ଦୀର୍ଘକାଳର ପାର୍ଲାମେଣ୍ଟ ସଦସ୍ୟ । ତେଣୁ ତାଙ୍କୁ ପାର୍ଲାମେଣ୍ଟର ପିତା ବୋଲି କୁହା ଯାଉଥିଲା ।

ଥରେ ଭୁବନାନନ୍ଦ ବାବୁଙ୍କର ପାର୍ଲାମେଣ୍ଟ ନିର୍ବାଚନରେ ତାଙ୍କର ଭ୍ରାତା ଶ୍ରୀ ବିଚିତ୍ରାନନ୍ଦ ଦାସ ଆମର ଯାଜପୁର ଅଞ୍ଚଳକୁ ନିର୍ବାଚନ ପ୍ରଚାରରେ ଆସିବା, ତାଙ୍କ ସହିତ ମୋର ସମାଗମ ତଥା କଟକସ୍ଥ ତାଙ୍କ ବାସଭବନରେ ୫।୭ ବର୍ଷ ଧରି ସାମୟିକ ସାକ୍ଷାତ୍ ଓ ଆଳାପ ବିଶିଷ୍ଟ ଭାବରେ ଏକ ସତ୍ ମାନବର ସଙ୍ଗତି ବୋଲି ମୁଁ ପ୍ରତ୍ୟେକ ଥର ଅନୁଭବ କରି ନିଜକୁ ଧନ୍ୟ ମନେ କରିଥାଏ ।

ସେ ଥିଲେ ଏକ ବିରାଟ ବ୍ୟକ୍ତିତ୍ୱ ସମ୍ପନ୍ନ ବ୍ୟକ୍ତି । ମୁଁ ଥିଲି ସେତେବେଳେ ଜଣେ ସାଧାରଣ ଗ୍ରାମ୍ୟ ଯୁବକ । ତଥାପି ତାଙ୍କର ନିର୍ବାଚନୀୟ କର୍ମୀ ଭାବେ ମୁଁ ତାଙ୍କର ଘନିଷ୍ଠ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଗଲି ।

ସେ ମୋତେ ପଣ୍ଡିତ ମହାଶୟ ବୋଲି ଡାକନ୍ତି । କିନ୍ତୁ ବାସ୍ତବରେ ମୁଁ ତ ପଣ୍ଡିତ ନୁହେଁ । କେବଳ ସଂସ୍କାର ମୂଳକ ଆଲୋଚନା କରିଥାଏ ।

ଥରେ ସେ ଯାଜପୁର ଟାଉନ୍‌ରେ ନିର୍ବାଚନ କାଳୀନ କ୍ୟାମ୍ପ୍ ପକାଇଥାନ୍ତି । ମୁଁ ତାଙ୍କୁ ସାକ୍ଷାତ୍ ପାଇଁ ଯାଇଥିଲି । ମୋ ସାଙ୍ଗରେ ଆଲୋଚନା କଲେ––

"ଆପଣ କହିପାରିବେ କି ମହାମତି ଚାଣକ୍ୟ ତାଙ୍କର ଚାଣକ୍ୟ-ଗ୍ରନ୍ଥରେ ଏଭଳି କାହିଁକି ଲେଖିଛନ୍ତି ?"

ସେହିଠୁଁ ସେ ଶ୍ଳୋକଟି କହିଲେ–

ତ୍ୟଜଦେକଂ କୁଳସ୍ୟାର୍ଥେ
କୁଳଂ ଜନପଦ ସ୍ୟାର୍ଥେ
ଜନପଦଂ ଦେଶ ସ୍ୟାର୍ଥେ
ଆତ୍ମର୍ଥେ ପୃଥିବୀଂ ତ୍ୟଜେତ୍ । [ଚାଣକ୍ୟ]

ଏଇ ଶ୍ଳୋକଟିରେ ଚାଣକ୍ୟ ଆତ୍ମଅର୍ଥେ ଅର୍ଥାତ୍ ନିଜପାଇଁ ପୃଥିବୀକୁ ତ୍ୟାଗକର ବା ଛାଡ଼ିଦିଅ କଥା ତ ଠିକ୍ ହେଲା ନାହିଁ । ମୁଁ ସଂଶୋଧନ କରି କହିଲି,"ତାହା ଆତ୍ମ ଅର୍ଥେ ନୁହେଁ ଆତ୍ମାର୍ଥେ ପୃଥିବୀଂ ତ୍ୟଜେତ୍ ।" ସେ କହିଲେ, "ମୁଁ ପଢ଼ିଛି", ମୁଁ କହିଲି "ଭୁଲ ଲେଖା ହୋଇଥିବ । ଆତ୍ମାର୍ଥେ ଶବ୍ଦର ଅର୍ଥ ଜଗତର ମଙ୍ଗଳ ପାଇଁ । ଏହା ସମଷ୍ଟି ବାଚକ । ବ୍ୟଷ୍ଟି ବାଚକ ନୁହେଁ ।" ସେ ମୋ କଥାକୁ ଗ୍ରହଣ କଲେ । ଚାଣକ୍ୟ ବହି ଖଣ୍ଡିଏ ଖୋଜାଖୋଜି ଚାଲିଲା । କେଉଁଠାରେ ମିଳିଲା ନାହିଁ । କିନ୍ତୁ ପରଥରକୁ ସେଇ ଯାଜପୁରରେ ବହି ଖୋଜା ଖୋଜି କରି ଶ୍ଳୋକଟିକୁ ଭଲଭାବେ ଦୋହରାଇ ରଖିଥିଲେ । ମୁଁ ଯିବାରୁ ମୋତେ କହିଲେ, "ଆପଣ ଯାହା କହୁଥିଲେ ଠିକ୍ । ଆତ୍ମ ଅର୍ଥ ନୁହେଁ । ଆତ୍ମାର୍ଥେ ଠିକ୍ ।" ଏଣୁ ସେ ମୋତେ ସେଇ ଦିନଠାରୁ ପଣ୍ଡିତ ମହାଶୟ ବୋଲି ସମ୍ବୋଧନ କରନ୍ତି ।

ମୁଁ ତାଙ୍କର କଟକସ୍ଥ ବାସଭବନକୁ ସାକ୍ଷାତ୍ ପାଇଁ ଅନେକଥର ଯାଇଛି । ତାଙ୍କ ସହ ସାଂସ୍କୃତିକ ଆଲୋଚନାରେ ଭାଗ ନେଇଛି । ତାଙ୍କ ପାଖରେ ବସିଥିଲା ବେଳେ ଜଣେ ମହାମାନବ ପାଖରେ ବସିଥିବାର ମୁଁ

ଅନୁଭବ କରେଁ । ତାଙ୍କର ବୈଠକଖାନାରେ ବସିଥିଲା ବେଳେ ବିଭିନ୍ନ ପ୍ରକାର ଆସ୍ୱର, ପାନୀୟ ଏବଂ ସୁସ୍ୱାଦୁ ଦ୍ରବ୍ୟ ଗୋଟିଏ ବଡ଼ ଥାଳିରେ ସଜାହୋଇ ବାରମ୍ବାର ତାଙ୍କ ନିକଟକୁ ଆସିବାର ଦେଖା ଯାଉଥାଏ । ସେ ନିଜେ ତ ସେଥିରୁ ସାମାନ୍ୟ ନିଅନ୍ତି; ଉପସ୍ଥିତ ବ୍ୟକ୍ତିମାନଙ୍କୁ ଗ୍ରହଣପାଇଁ ଅନୁରୋଧ କରନ୍ତି ।

ଥରେ ମୁଁ ତାଙ୍କୁ କହିଲି ଆପଣ ଏତେଥର କଣ ପିଲାଙ୍କଭଳି ଏ ସବୁ ଗ୍ରହଣ କରୁଛନ୍ତି ଟିକେ ଟିକେ । ସେ ମୋତେ ବୁଝାଇ କହିଲେ ଆପଣ ବୁଝିନାହାଁନ୍ତି ପଣ୍ଡିତ ମହାଶୟ ମନକୁ ମଝିରେ ମଝିରେ ବହଲେଇ ନ ଦେଲେ କ୍ଳାନ୍ତ ଭବ ଆସେ ।

ସେ ଡକ୍ଟର ମହତାବଙ୍କୁ ଭୂୟସୀ ପ୍ରଶଂସା କରନ୍ତି । ସେ ଥରେ କହିଲେ ଡ: ମହତାବ ଜଣେ ଅସାଧାରଣ ପ୍ରତିଭା ସଂପନ୍ନ ବ୍ୟକ୍ତି । ସେ ଜଣେ ମହାମାନବ । କିନ୍ତୁ ତାଙ୍କର ଗୋଟିଏ ବଡ଼ ଦୋଷ ଅଛି । ସେ ଦୋଷଟି ଆଉ କିଛି ନୁହେଁ, ସେ ଜଣେ ଅତୀବ ମମତାପ୍ରିୟ ବ୍ୟକ୍ତି । ଏ କଥା ତାଙ୍କଠାରୁ ମୁଁ ଅନେକଥର ଶୁଣିଛି ।

ଆଉଥରେ ଖରାବେଳେ ମୁଁ ତାଙ୍କ ନିକଟରେ ବସିଥିଲି । ଚଉଦ୍ୱାର ହାଇସ୍କୁଲର ସହକାରୀ ହେଡ୍‌ମାଷ୍ଟର ଜନୈକ ଭଦ୍ରବ୍ୟକ୍ତି ମଧ୍ୟ ତାଙ୍କ ନିକଟରେ ବସିଥିଲେ । କଥା ପଡୁ ପଡୁ କହିଲେ ତାଙ୍କର ପ୍ରତିଷ୍ଠିତ ଅନାଥ-ଶାଳା କଥା । ଏବଂ କହିଲେ ଓଡ଼ିଶାରେ ମୋର ବହୁତ ଝିଅ ଜ୍ୱାଇଁ ଅଛନ୍ତି । ମୁଁ ଏଠାରେ ଅନେକ ଅନାଥାଙ୍କୁ ଆଶ୍ରା ଦେଇଥାଏ । ସେମାନଙ୍କୁ ମଣିଷକରି ସଂସାର କ୍ଷେତ୍ରକୁ ଛାଡ଼ିଦିଏ । ଗୋଟିଏ ଝିଅ କାହିଁକି ସବୁବେଳେ ସମାଜ ଆଖିରେ ଦୋଷୀ ହେବ, ଗୋଟିଏ ପୁଅ କାହିଁକି ହେବନାହିଁ । ଏ ସମ୍ବନ୍ଧେ ବହୁତ ଶାସ୍ତ୍ର ଆଲୋଚନା ହେଲା । ଏହାପରେ ବୌଦ୍ଧଧର୍ମର ମହନୀୟତା ନେଇ ଆଲୋଚନା କଲେ । ଅନେକ କଥା କହି ସନାତନ ଧର୍ମକୁ ଲଘୁତ୍ୱ ଦେଲେ । ମୁଁ ଏ ସମ୍ବନ୍ଧେ ଦୀର୍ଘ ଉଦାହରଣ ମାନ ଦେଇ ତାଙ୍କ ମତ ଖଣ୍ଡନ କରିବାରେ ସେ ସନ୍ତୋଷ ଲାଭ କଲେ । ପରିଶେଷରେ ସେ କହିଲେ—ମୁଁ ଜଣେ ମୂର୍ଖ ଓକିଲ । ଶାସ୍ତ୍ର ଇତ୍ୟାଦି ବିଶେଷ ପାଠ କରିନାହିଁ । ପୁଣି କହିଲେ—ମୋ

ଭଳି ଅନେକ ଓକିଲ ଅଛନ୍ତି । ଖାଲି ଆଇନଚର୍ଚ୍ଚାରେ ଜୀବନ ବିତେଇ ଦେଉଛୁ ସିନା । ସେଇଠୁ ସେ ମୋ ହାତଧରି କ୍ଷମା ମାଗିଲେ । କହିଲେ– ଆପଣଙ୍କ ପୁଅପାଇଁ ଯତ୍ ସାମାନ୍ୟ ମିଠେଇ ଖିଆ ଦେଉଛି ଗ୍ରହଣ କରନ୍ତୁ ଇତ୍ୟାଦି । ନାନା କଥା ପଡ଼େ । ଭୁବନାନନ୍ଦ ଦାସଙ୍କ ସହ ତୀର୍ଥ ଭ୍ରମଣ କରିଯିବା, ସୋମନାଥ ମନ୍ଦିର ଦର୍ଶନ ଏବଂ ଭଗବାନ ଶ୍ରୀକୃଷ୍ଣଙ୍କ ଦେହୋତ୍‌ସର୍ଗ ସ୍ଥାନ ଦର୍ଶନ, ଶ୍ରୀକୃଷ୍ଣଙ୍କ ଦେହୋତ୍‌ସର୍ଗ ସ୍ଥାନରେ ଗୀତାର ଅଷ୍ଟାଦଶ ଅଧ୍ୟାୟ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଦ୍ୱାରା ସୁରକ୍ଷିତ ହେବା, ତାଙ୍କର ଯୌବନ କାଳରେ କପିଳାସ ପର୍ବତକୁ ତପସ୍ୟା ପାଇଁ ଯିବାର କାମନା ଇତ୍ୟାଦି କେତେ ଆକର୍ଷଣୀୟ କଥା କହନ୍ତି । ପ୍ରତି କଥାଗୁଡ଼ିକ ଅକପଟ ଅମ୍ଳାନ ସାଧୁତା ଓ ସୌଜନ୍ୟର ପରିଚୟ ଦିଏ ।

ତାଙ୍କ କଥାରେ ତାଙ୍କ ଭାଇ ଭୁବନାନନ୍ଦ ଦାସଂକ ପ୍ରତି ସ୍ନେହାତିଶଯ୍ୟ ମଧ୍ୟ ବାରମ୍ବାର ଫୁଟିଉଠେ ।

ଥରେ ଭୂଦାନ ଯଜ୍ଞ କଥା ପଡୁ ପଡୁ ଗୋପବାବୁ ରମାଦେବୀଂକ ବିବାହ ସମୟରେ ମିଷ୍ଟର ଦାସଂକ ବାସ-ଭବନକୁ ଯିବା ଓ ମିଷ୍ଟର ଦାସଂକ ଦ୍ୱାରା ରମାଦେବୀଙ୍କୁ ଯୌତୁକ ପ୍ରଦାନର ଗଳ୍ପ କହିଲେ । କହିଲେ ମୁଁ ମିଷ୍ଟର ଦାସ ନିଜେ କହିବାର ଶୁଣିଛି, "ମାଆ ଏ ବାକ୍‌ସଟି ଅତି ଦରକାର ନହେଲେ ଖୋଲିବୁ ନାହିଁ ।"

କହିଲେ, "ମୁଁ ପୁଣି ସେଇ ରମାକୁ ଭୂଦାନଯଜ୍ଞ ଅଫିସ୍‌ରେ ଗୋବରରେ ନିଜ ହାତରେ ଘର ଲେପୁଥିବାର ଦେଖି ମୋତେ କାନ୍ଦ ମାଡ଼ିଲା ।"

ମୁଁ ତାଙ୍କୁ ପୁରୀର ରଥଯାତ୍ରାରେ ରଥଆଗରେ ସାଦା ପୋଷାକରେ ଗୋଟେ ପଞ୍ଜାବି ଗୁଦର ପକାଇ କୀର୍ତ୍ତନ କରି ଚାଲିଥିବାର ଦୃଶ୍ୟ ଅତି ଆକର୍ଷଣୀୟ ଭାବେ ଉପଲବ୍‌ଧି କରିଛି । ବିଚିତ୍ରାନନ୍ଦ ଦାସ ଏକାଧାରରେ ବିଦ୍ୱାନ ଆଇନଜ୍ଞ ଏବଂ ଉଦାର ଉଚ୍ଚମନା ରାଜନୀତିଜ୍ଞ ଥିଲେ । ତାଂକ ସମ୍ବନ୍ଧେ ମୋର ଏଇ ମହନୀୟ ସ୍ମୃତି ଜାଗ୍ରତ ହୁଏ । ତାଂକର ମହାନ ଆତ୍ମା

ଚିର ସୁଖ ଶାନ୍ତି ଲାଭ କରୁ – ତାଂକର ଏକଶତ ବାର୍ଷିକୀ ଜୟନ୍ତୀରେ ମୋର ଆନ୍ତରିକ କାମନା ।

ସ୍ୱାମୀ ବିଚିତ୍ରାନନ୍ଦ ଦାସଂକ ଭଳି କ୍ଷଣଜନ୍ମା ଯୋଗଜନ୍ମା ପୁରୁଷମାନେ ଏଇ ଉତ୍କଳ ଭୂଖଣ୍ଡରେ ପୁଣି ଜନ୍ମଲାଭ କରନ୍ତୁ ।

୫ ୦ ୫

ବୈତରଣୀ ରୋଡ୍
ପୋ–କୁରୁଣ୍ଡାଇ
କଟକ

# ଯୁଗସ୍ରଷ୍ଟା ଭୁବନାନନ୍ଦ

ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ

ଭାରତୀୟ ସ୍ୱାଧୀନତା ସଂଗ୍ରାମର ବରେଣ୍ୟ ରଥୀ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଅନ୍ୟତମ ସ୍ରଷ୍ଟା ଜନନାୟକ ଭୁବନାନନ୍ଦ ଦାସଙ୍କ କର୍ମମୟ ଜୀବନର ଗୌରବ ଗାଥା ଅତୁଳନୀୟ । ଦେଶ ଗଠନରେ ତାଙ୍କର ଅବଦାନ ଚିର ସ୍ମରଣୀୟ ।

୧୮୮୫ ମସିହା ମେ ମାସ ୧୪ ତାରିଖ ସାବିତ୍ରୀ ଅମାବାସ୍ୟା ଦିନ ଏହି ମହାନ ଜନନାୟକ ପୁରୀ ଜିଲା ବାଲିପାଟଣା ଥାନା ଅନ୍ତର୍ଗତ କୁରୁଞ୍ଜିପୁର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ବାପାଙ୍କ ନାମ ଥିଲା ରାମଚନ୍ଦ୍ର ଦାସ ଓ ମା'ଙ୍କ ନାମ ରସିକା ଦେବୀ । ରାମଚନ୍ଦ୍ର ଦାସ ସେତେବେଳେ ପୁରୀର ସଦର ମହକୁମାରେ ରାଜସ୍ୱ ବିଭାଗୀୟ କାନୁନ୍‌ଗୋ ଥିଲେ । ଭୁବନାନନ୍ଦ ଓ ବିଚିତ୍ରାନନ୍ଦ ଉଭୟେ ଯାଆଁଳା ଭାଇ ଥିଲେ । ଭୁବନାନନ୍ଦଙ୍କ ଜନ୍ମର କେତୋଟି ମୁହୂର୍ତ୍ତ ପୂର୍ବରୁ ବିଚିତ୍ରାନନ୍ଦଙ୍କ ଜନ୍ମ ହୋଇଥିବାରୁ ଭୁବନାନନ୍ଦ ତାଙ୍କୁ ବଡ଼ ଭାଇ ଭାବେ ଭକ୍ତି କରୁଥିଲେ ।

ଜନ୍ମସ୍ଥାନ କୁରୁଞ୍ଜିପୁରର ପ୍ରାକୃତିକ ପରିବେଶ ତାଙ୍କୁ ପିଲାଦିନରୁ ଆକୃଷ୍ଟ କରିଥିଲା । ଗ୍ରାମର ଏକ ଦିଗରେ ଜଗତ ବିଖ୍ୟାତ କବି ଜୟଦେବଙ୍କ ପବିତ୍ର ଜନ୍ମସ୍ଥାନ କେନ୍ଦୁବିଲ୍ୱ ଶାସନ । ଉତ୍କଳ ଜାହ୍ନବୀ ପ୍ରାଚୀ ଓ ପୁରାଣ ପ୍ରସିଦ୍ଧ କୁଶଭଦ୍ରା ନଦୀ ତାଙ୍କୁ ଉତ୍କଳର ଅତୀତ ଗୌରବ ଓ ଭାରତ ବର୍ଷର ଅତୀତ ବିଭବ ସମ୍ପର୍କରେ ଯଥେଷ୍ଟ ପ୍ରେରଣା ଦେଇଥିଲା । ଶୈଶବ ଓ କୈଶୋରର ଲୀଳା ଚପଳ ଦିନଗୁଡ଼ିକ ଏହି ପଲ୍ଲୀର ଶାନ୍ତ ପରିବେଶ ମଧ୍ୟରେ ହିଁ ତାଙ୍କୁ କଟାଇବାକୁ ପଡ଼ିଥିଲା ।

କୁରୁଞ୍ଜିପୁର ନିକଟବର୍ତ୍ତୀ ଏକ ଉଚ୍ଚପ୍ରାଥମିକ ବିଦ୍ୟାଳୟରେ ଶିକ୍ଷା ସମାପ୍ତ କରି ଭୁବନାନନ୍ଦ ଓ ତାଂକର ବଡ଼ଭାଇ ବିଚିତ୍ରାନନ୍ଦ କଟକର ରେଭେନ୍‌ସା

କଲେଜିଏଟ୍ ସ୍କୁଲରେ ମାଧ୍ୟମିକ ଶିକ୍ଷା ପାଇଁ ପ୍ରବେଶ କଲେ । ବର୍ତ୍ତମାନର ମାଟ୍ରିକ୍ୟୁଲେସନ ପରୀକ୍ଷାକୁ ସେତେବେଳେ ଏଣ୍ଟ୍ରାନ୍‌ସ୍ କୁହାଯାଉଥିଲା । ସେ ୧୯୦୫ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ହୋଇଥିବା ଏଣ୍ଟ୍ରାନସ୍ ପରୀକ୍ଷାରେ ଓଡ଼ିଆ ଛାତ୍ରମାନଂକ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କରି ସରକାରୀ ବୃତ୍ତି ପାଇଥିଲେ । ଏଣ୍ଟ୍ରାନସ୍ ପରେ କଲେଜ ଶିକ୍ଷା ପାଇଁ ଏହି ଦୁଇ ଭାଇ ରେଭେନ୍‌ସା କଲେଜରେ ପ୍ରବେଶ କଲେ । ଦୁହେଁ ୧୯୦୭ ମସିହାରେ ରେଭେନ୍‌ସା କଲେଜରୁ ପ୍ରଥମ ଶ୍ରେଣୀରେ ଏଫ୍.ଏ. ପାସ୍ କରିଥିଲେ । ରେଭେନ୍‌ସା କଲେଜରେ ପଢୁଥିବା ବେଳେ ଉତ୍କଳଗୌରବ ମଧୁସୂଦନ ଦାସଂକ ଦ୍ୱାରା ପ୍ରତିଷ୍ଠିତ "ୟଙ୍ଗ ମେନ୍‌ସ ଆସୋସିଏସନ" ଉଦ୍ୟମରେ ପରିଚାଳିତ ଇଂରାଜୀ ପ୍ରବନ୍ଧ ପ୍ରତିଯୋଗିତାରେ ଭୁବନାନନ୍ଦ ବାବୁ ପ୍ରଥମ ହୋଇ ସ୍ୱର୍ଣ୍ଣ ପଦକ ପାଇଥିଲେ ।

ଏଫ୍.ଏ. ପାସ କରିବା ପରେ ଭୁବନାନନ୍ଦ ବଙ୍ଗ ପ୍ରଦେଶର ଶିବପୁର ଇଂଜିନିୟରିଂ କଲେଜରେ ନାମ ଲେଖାଇଥିଲେ । ତାଙ୍କ ଯାଆଁଳା ଭାଇ ବିଚିତ୍ରାନନ୍ଦ ଇଂଜିନିୟରିଂ ଶିକ୍ଷା ପ୍ରତି ଆକୃଷ୍ଟ ନ ହୋଇ ଓକିଲାତି ପଢ଼ିଲେ ଓ ସମୟକ୍ରମେ ଓଡ଼ିଶାରେ ଜଣେ ବିଶିଷ୍ଟ ଆଇନଜ୍ଞ ଭାବେ ଖ୍ୟାତିଲାଭ କଲେ । ଭୁବନାନନ୍ଦ ବାବୁ ଶିବପୁର ଇଂଜିନିୟରିଂ କଲେଜରୁ ୧୯୧୧ ମସିହାରେ କୃତିତ୍ୱ ସହ ଇଂଜିନିୟରିଂ ପାସକରି ସରକାରୀ ବୃତ୍ତି ଲାଭକରି ଇଂଜିନିୟରିଂରେ ଉଚ୍ଚ ଶିକ୍ଷା ପାଇଁ ବିଲାତ ଯାତ୍ରା କଲେ । ବିଲାତର ଗ୍ଲାସ୍‌ଗୋ ବିଶ୍ୱବିଦ୍ୟାଳୟରେ ଇଲେକ୍ଟ୍ରିକାଲ ଇଞ୍ଜିନିୟରିଂରେ ଅଧ୍ୟୟନ କରି, ଉକ୍ତ ବିଶ୍ୱବିଦ୍ୟାଳୟର ବି.ଏସ୍.ସି. ଉପାଧି ପାଇ ବିଲାତର ଗୋଟିଏ କର୍ପୋରେସନ୍‌ରେ ଜଣେ ସହକାରୀ ଇଞ୍ଜିନିୟରଭାବେ ଯୋଗ ଦେଲେ । ସେତେବେଳେ ପ୍ରଥମ ବିଶ୍ୱଯୁଦ୍ଧ ଲାଗିଥାଏ । ୧୯୧୮ ମସିହାରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ବମ୍ବେ ଇଲେକ୍ଟ୍ରିକ୍ ସପ୍ଲାଇ ଏଣ୍ଡ ଟ୍ରାମ୍ ଓ୍ୱେଜରେ ଜଣେ ସହକାରୀ ଇଂଜିନିୟରଭାବେ ଯୋଗ ଦେଲେ । ମାତ୍ର ଉକ୍ତ ସଂସ୍ଥାର କର୍ତ୍ତୃପକ୍ଷ ଭୁବନାନନ୍ଦଙ୍କର ଜଣେ ଅଧସ୍ତନ ଇଂରେଜ କର୍ମଚାରୀଙ୍କୁ ଉପର ପାହ୍ୟାକୁ ପଦୋନ୍ନତି ଦେଇଥିବାରୁ ଭୁବନାନନ୍ଦ ପ୍ରତିବାଦ ସ୍ୱରୂପ ଉକ୍ତ ଚାକିରିରୁ ଇସ୍ତଫା ଦେଇଥିଲେ । ଏହି ଘଟଣା ପରେ ତାଙ୍କ ମନରେ ଅପ୍ରତିହତ ଭାରତୀୟ ଆତ୍ମମର୍ଯ୍ୟାଦାର ଭାବର ଉଦ୍ରେକ ହୋଇଥିଲା ।

## ଶିଳ୍ପ ପ୍ରସାରରେ ଭୁବନାନନ୍ଦ—

ରୁକିରିରୁ ଇସ୍ତଫା ଦେଇଦେବା ପରେ ଭୁବନାନନ୍ଦ ବମ୍ବେରେ ରହି ସ୍ୱାଧୀନ ଭାବେ ତାଙ୍କର ବ୍ୟବସାୟ ଆରମ୍ଭ କଲେ । ସେତେବେଳେ ଭାରତ ବର୍ଷରେ ବିଦ୍ୟୁତ୍ ଶିଳ୍ପର ପ୍ରୟୋଜନ ଅତ୍ୟନ୍ତ ନିମ୍ନ ଅବସ୍ଥାରେ ଥିଲା । ବଡ଼ ବଡ଼ ସହରର ବିଦ୍ୟୁତ୍ ଉତ୍ପାଦନ ଓ ସରବରାହ ସଂସ୍ଥାମାନ ଇଂରେଜ ବ୍ୟବସାୟୀଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ଭାରତୀୟମାନେ ବିଦ୍ୟୁତ୍ ଶିଳ୍ପର ଉପଯୋଗିତା ସେତେବେଳେ ଭଲ ଭାବରେ ବୁଝିନଥିଲେ । ବିଦ୍ୟୁତ୍ ଶିଳ୍ପର ଉପଯୋଗିତା ଓ ଭାରତରେ ତାର ପ୍ରସାର ନିମନ୍ତେ ଭୁବନାନନ୍ଦ ଅଦମ୍ୟ ଉଦ୍ୟମ ଚଳାଇଥିଲେ । ଭୁବନାନନ୍ଦଙ୍କ ପରାମର୍ଶ ଓ ତତ୍ତ୍ୱାବଧାନରେ ବ୍ରୋଚ୍, କାମ୍ବେ, ଶିଖର ପୁର, ଆଲିଗଡ଼, ଗୟା, ଛପରା, ରାଜମହେନ୍ଦ୍ରୀ ଓ କାକିନଡ଼ା ପ୍ରଭୃତି ଭାରତବର୍ଷର ବଡ଼ ବଡ଼ ସହରରେ ବିଦ୍ୟୁତ୍ ଉପାଦନ ଓ ସରବରାହ ସଂସ୍ଥାମାନ ସ୍ଥାପିତ ହୋଇ ପାରିଥିଲା । ତତ୍କାଳୀନ ରାଜକୋଟର ରାଜା ଭୁବନାନନ୍ଦଙ୍କୁ ନିଜ ରାଜ୍ୟର ବିଦ୍ୟୁତ୍ ପରାମର୍ଶଦାତା ଭାବେ ନିଯୁକ୍ତି ଦେଇଥିଲେ ! ଭୁବନାନନ୍ଦଙ୍କ ଉଦ୍ୟମରେ ହିଁ ରାଜକୋଟରେ ପ୍ରଥମେ ବିଦ୍ୟୁତ୍ ସରବରାହ ହୋଇ ପାରିଥିଲା । ଓଡ଼ିଶା ଅନ୍ତର୍ଗତ ମୟୂରଭଞ୍ଜର ତତ୍କାଳୀନ ରାଜା ପୁଣ୍ୟଶ୍ଳୋକ ଶ୍ରୀ ରାମଚନ୍ଦ୍ର ଭଞ୍ଜ ମଧ୍ୟ ଭୁବନା-ନନ୍ଦଙ୍କୁ ନିଜ ରାଜ୍ୟର ରାଜଧାନୀ ବାରିପଦାରେ ବିଦ୍ୟୁତ୍ ଯୋଗାଣ ନିମନ୍ତେ ପରାମର୍ଶଦାତା ଭାବେ ନିଯୁକ୍ତି ଦେଇଥିଲେ । ଓଡ଼ିଶାର କଟକରେ ବିଦ୍ୟୁତ୍ ଯୋଗାଣ ନିମନ୍ତେ ସେ ସରକାରଙ୍କ ଠାରୁ ଅନୁମତି ଚାହୁଁଥିଲେ; ମାତ୍ର ଇଂରେଜ ସରକାର ତାଙ୍କୁ ସେଥିପାଇଁ ଅନୁମତି ଦେଇ ନ ଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପରେ ଓଡ଼ିଶାର କଂଗ୍ରେସ ମନ୍ତ୍ରିମଣ୍ଡଳ ପୁରୀରେ ବିଦ୍ୟୁତ୍ ଯୋଗାଣ ସଂସ୍ଥା ଗଠନ ନିମନ୍ତେ ତାଙ୍କୁ ଅନୁମତି ଦେଇଥିଲେ । ମୟୂରଭଞ୍ଜର ମହାରାଜା ସ୍ୱର୍ଗୀୟ ପ୍ରତାପଚନ୍ଦ୍ର ଭଞ୍ଜଦେଓ ଏଥିପାଇଁ ତାଙ୍କୁ ୫୦ ହଜାର ଟଙ୍କା ସାହାଯ୍ୟ ଦେଇଥିଲେ । ବହୁ ବାଧାବିଘ୍ନ ସତ୍ତ୍ୱେ ୧୯୪୦ ମସିହାରେ ଏହା ସମ୍ଭବ ହୋଇ ପାରିଥିଲା । ଓଡ଼ିଶାର ତତ୍କାଳୀନ ଲାଟ୍ ସାର୍ ଜନ୍ ଅଷ୍ଟିନ୍ ହବାର୍ଡ୍ ପୁରୀ ବିଦ୍ୟୁତ୍ ଯୋଗାଣର ଶୁଭ ଉଦ୍‌ଘାଟନ କରିଥିଲେ ।

ଓଡ଼ିଶାର ଉପକୂଳ ଅଞ୍ଚଳରେ ଲବଣ ଶିଳ୍ପର ପୁନରୁଦ୍ଧାର ନିମନ୍ତେ ଭୁବନାନନ୍ଦ ବାବୁ ତତ୍କାଳୀନ ଭାରତ ସରକାରଙ୍କୁ ଏକ ସ୍ମାରକ ପତ୍ର ଦେଇଥିଲେ ।

ଏହି ସ୍ମାରକ ପତ୍ର "ପ୍ରାଚୀନ ଓଡ଼ିଶାରେ ଲବଣ ଶିଳ୍ପ" ନାମରେ ଏକ ପୁସ୍ତକ ଆକାରରେ ପ୍ରକାଶ ପାଇଥିଲା । ପରବର୍ତ୍ତୀ କାଳରେ ତାଙ୍କରି ଯୋଜନା କାର୍ଯ୍ୟକାରୀ ହୋଇ ଓଡ଼ିଶାରେ ଲବଣ ଶିଳ୍ପର ଅଗ୍ରଗତି ହୋଇଛି । ଭୁବନାନନ୍ଦ ବାବୁ ବମ୍ବେରେ ଇଂଜିନିୟରିଂ ପରାମର୍ଶଦାତା ଭାବେ ନିଜର ସ୍ୱାଧୀନ ବ୍ୟବସାୟ ଚଳାଇଥିବା ବେଳେ ଇଣ୍ଡିଆନ ଚେମ୍ବର ଅଫ କମର୍ସର ସଭ୍ୟ ଥାଇ ୧୯୨୯ ମସିହାରେ ଜେନେଭାରେ ହେଉଥିବା ଆନ୍ତର୍ଜାତିକ ଶ୍ରମ ସମ୍ମିଳନୀରେ ଶ୍ରମିକ ପରାମର୍ଶଦାତ ରୂପେ ମନୋନୀତ ହୋଇଥିଲେ । ୧୯୨୯ ମସିହାରେ ତାଙ୍କରି ଉଦ୍ୟମରେ ଓଡ଼ିଶା ଚେମ୍ବର ଅଫ କମର୍ସ ପ୍ରତିଷ୍ଠା ଲାଭ କରିଥିଲା ।

ଭୁବନାନନ୍ଦ ବିହାର ରାଜ୍ୟର ଶିଳ୍ପ ବୋର୍ଡ ଓ ବିହାର ଇଂଜିନିୟରିଂ କଲେଜର ପରିଚାଳନା ପରିଷଦରେ ବହୁ ବର୍ଷ ସଭ୍ୟ ଥିଲେ । ଓଡ଼ିଶା ତଥା ଭାରତବର୍ଷର ଶିଳ୍ପ ପ୍ରତିଷ୍ଠା ଓ ଭାରତୀୟ ଯୁବକମାନଙ୍କୁ ଇଂଜିନିୟରିଂରେ ଉଚ୍ଚଶିକ୍ଷା ଦେବା ନିମନ୍ତେ ସେ ଆପ୍ରାଣ ଉଦ୍ୟମ କରିଥିଲେ । ତାଙ୍କର ଉଦ୍ୟମରେ କଟକରେ ଇଂଜିନିୟରିଂ ସ୍କୁଲ ପ୍ରତିଷ୍ଠା ଲାଭ କରିଥିଲା ଓ ସେ ଏହାର ବହୁ ବର୍ଷ ପର୍ଯ୍ୟନ୍ତ ସଭାପତି ଥିଲେ ।

## ରାଜନୀତିଜ୍ଞ ଭୁବନାନନ୍ଦ—

୧୯୨୩ ମସିହାରେ ସେ କଂଗ୍ରେସ ପ୍ରାର୍ଥୀ ଭାବେ କେନ୍ଦ୍ର ବିଧାନସଭାକୁ ବହୁ ଭୋଟରେ ନିର୍ବାଚିତ ହୋଇଥିଲେ ଏବଂ ସେହି ଦିନଠାରୁ ୧୯୪୭ ମସିହା ପର୍ଯ୍ୟନ୍ତ କେନ୍ଦ୍ର ବିଧାନ ସଭାର ସଭ୍ୟ ହୋଇ ରହି ଆସୁଥିଲେ ।

ନିଜର ମାନସିକ ଅଶାନ୍ତି ଓ ବ୍ୟକ୍ତିଗତ କାରଣ ହେତୁ ୧୯୪୬ ମସିହାରେ କେତେକ ସମୟ ପର୍ଯ୍ୟନ୍ତ ସେ ଏହି ପଦରୁ ଓହରି ଯାଇଥିଲେ ।

୧୯୪୭ ମସିହାରେ ଭାରତ ସ୍ୱାଧୀନତା ପାଇବା ପରେ ଭୁବନାନନ୍ଦ ଶାସନ ବିଧାୟକ ସଭାର ସଭ୍ୟ ଥିଲେ । ୧୯୫୧ ମସିହାରେ ହୋଇଥିବା ପ୍ରଥମ ସାଧାରଣ ନିର୍ବାଚନରେ ସେ ଓଡ଼ିଶାର କେନ୍ଦୁଝର ଓ ଯାଜପୁର ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ୧୯୫୭ ମସିହାରେ ତାଙ୍କୁ ରାଜ୍ୟ ସଭାର ସଭ୍ୟ ଭାବେ ପଠାଗଲା ଓ ମୃତ୍ୟୁ ପର୍ଯ୍ୟନ୍ତ ସେ ଏହି ପଦବୀରେ ଥିଲେ । କେନ୍ଦ୍ରୀୟ ବିଧାନ ସଭାର ସଭ୍ୟ ଥିବାବେଳେ ବହୁ

ଭାରତୀୟ ନେତୃବର୍ଗଙ୍କ ସହ ତାଙ୍କର ଅତ୍ୟନ୍ତ ଘନିଷ୍ଠତା ଥିଲା ଓ ସେମାନେ ମଧ୍ୟ ଭୁବନାନନ୍ଦଙ୍କୁ ଶ୍ରଦ୍ଧା ଓ ସମ୍ମାନ ଦେଖାଉଥିଲେ । ଦଳମତ ନିର୍ବିଶେଷରେ ତାଙ୍କୁ ସମସ୍ତେ "ଫାଦର ଅଫ୍ ଦି ହାଉସ" ବା "ପାର୍ଲାମେଣ୍ଟର ଜନକ" ବୋଲି କହୁଥିଲେ ।

କେନ୍ଦ୍ରୀୟ ବିଧାନ ସଭାର ସଭ୍ୟ ଥିବାବେଳେ ସେ ଦଳର କାରପଟ୍ଦାର, ମୁଖ୍ୟ କାରପଟଦାର, ବହୁ କମିଟିର ସଭ୍ୟ, ଅଧ୍ୟକ୍ଷ ଓ କଂଗ୍ରେସ ଦଳର କୋଷାଧ୍ୟକ୍ଷ ଥିଲେ । ଭାରତ ସରକାରଙ୍କ ଅର୍ଥ ଓ ଶିଳ୍ପନୀତି ଉପରେ ଚାଲିଥିବା ଆଲୋଚନାରେ ସବିଶେଷ ଭାଗ ନେଉଥିଲେ । ପାର୍ଲାମେଣ୍ଟ୍ର ପବ୍ଲିକ୍ ଆକାଉଣ୍ଟସ୍ କମିଟିର ସେ ବହୁ ବର୍ଷ ପର୍ଯ୍ୟନ୍ତ ସଭାପତି ଥିଲେ । ପାର୍ଲାମେଣ୍ଟରେ ବାଲ୍ୟ ବିବାହ ଉଚ୍ଛେଦ ଆଇନ ସଂଶୋଧନର ବ୍ୟବସ୍ଥା କରି ସେ ସମଗ୍ର ହିନ୍ଦୁ ସମାଜର ପ୍ରଶଂସା ଭାଜନ ହୋଇ ପାରିଥିଲେ ।

## ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ—

କେନ୍ଦ୍ରୀୟ ବିଧାନ ସଭାର ସଭ୍ୟ ଥିଲାବେଳେ ଭୁବନାନନ୍ଦ ବାବୁ ତାଙ୍କର ବମ୍ବେରେ ଆୟପ୍ରଦ ବ୍ୟବସାୟକୁ ଛାଡ଼ି ଦେଇ ଓଡିଶାରେ ତାଙ୍କର କର୍ମକ୍ଷେତ୍ର ଆରମ୍ଭ କଲେ । କେନ୍ଦ୍ରୀୟ ବିଧାନ ସଭାର ସଭ୍ୟ ଥିବାବେଳେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ସେ ଏକ ପ୍ରସ୍ତାବ ଆଣିଥିଲେ ଓ ତାହାକୁ ସମର୍ଥନ କରି କେନ୍ଦ୍ରୀୟ ବିଧାନ ସଭା ତତ୍କାଳୀନ ମାନ୍ଦ୍ରାଜ ରାଜ୍ୟ ଅନ୍ତର୍ଗତ ଓଡ଼ିଆ ଭାଷା ଭାଷୀ ଅଞ୍ଚଳ ସମ୍ପର୍କରେ ଅନୁସନ୍ଧାନ ପାଇଁ "ଫିଲିପ୍ ଡଫ୍ କମିଟି" ନିଯୁକ୍ତ କରିଥିଲେ । ସାଇମନ କମିଶନ ମଧ୍ୟ ଏହି ଦାବିକୁ ଗ୍ରହଣ କରିଥିଲେ । ମାତ୍ର ଏହାର ଶେଷ ନିଷ୍ପତ୍ତି ଲଣ୍ଡନ ଠାରେ ହେଉଥିବା ଗୋଲଟେବୁଲ ବୈଠକରେ ହେବାର ଥାଏ । ଏଥିରେ ପ୍ରତିନିଧିତ୍ୱ କରିବା ପାଇଁ ପାରଳାଖେମୁଣ୍ଡିର ସ୍ୱନାମ ଧନ୍ୟ ଗଜପତି ମହାରାଜା କୃଷ୍ଣଚନ୍ଦ୍ର ଦେବ ଓ ଖଲ୍ଲିକୋଟର ରାଜା ରାମଚନ୍ଦ୍ର ଦେବ ଓଡ଼ିଶାର ରାଜନ୍ୟ ମଣ୍ଡଳୀ ତରଫରୁ ଯୋଗ ଦେବା ପାଇଁ ଯାଇଥାନ୍ତି । ଭୁବନାନନ୍ଦ ଉତ୍କଳ ୟୁନିୟନ କନ୍ଫରେନ୍ସ ତରଫରୁ ଏହି ବୈଠକରେ ଓଡ଼ିଶାର ଦାବୀ ଜଣାଇବା ପାଇଁ ଯାଇଥାନ୍ତି । ଓଡ଼ିଶାର ଏହି ବରେଣ୍ୟ ପ୍ରତିନିଧିମାନେ ଗୋଲଟେବୁଲ ବୈଠକରେ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ପ୍ରଶ୍ନ ଉଠାଇଥିଲେ ।

ବୈଠକରେ ଓଡ଼ିଶା ଓ ସିନ୍ଧୁକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ଏକ ସବ୍ କମିଟି ଗଢ଼ାଗଲା । ପୁନର୍ବାର ୧୯୩୧ ମସିହାରେ ଦ୍ୱିତୀୟ ଥର ପାଇଁ ଗୋଲ-ଟେବୁଲ ବୈଠକ ଲଣ୍ଡନ ଠାରେ ବସିଲା । ଭୁବନାନନ୍ଦ ବାବୁ ଓଡ଼ିଶାବାସୀଙ୍କ ଆଶା ଆକାଂକ୍ଷା ପୂରଣ ପାଇଁ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ନିମନ୍ତେ ପୁନର୍ବାର ଏହି ବୈଠକରେ ଦାବୀ ଉଠାଇଥିଲେ । ତାଙ୍କ ବଳିଷ୍ଠ ଯୁକ୍ତି ଓ ବ୍ୟକ୍ତି-ଗତ ପ୍ରଭାବ ହେତୁ ୧୯୩୨ ମସିହାର ଶେଷ ଭାଗରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ନିମନ୍ତେ ଗୋଲଟେବୁଲ ବୈଠକରେ ନିଷ୍ପତ୍ତି ହେଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ନିମନ୍ତେ ଗଢ଼ା ଯାଇଥିବା ସବ୍‌କମିଟିରେ ଭୁବନାନନ୍ଦ ବାବୁ ଓଡ଼ିଶାର ଆଦିବାସୀମାନଙ୍କୁ ନବଗଠିତ ଓଡ଼ିଶା ସହ ରଖିବାକୁ ଦାବି କରିଥିଲେ । ଏହି ସବ୍ କମିଟିର ଅଧ୍ୟକ୍ଷ ସାର୍ ସାମୁଏଲ ହୋର ଏହି ଦାବିକୁ ସ୍ୱାଗତ କରିଥିଲେ । ଓଡ଼ିଶାର ସୀମା ନିର୍ଦ୍ଧାରଣ ପାଇଁ ଓଡନଲ କମିଟି ନିଯୁକ୍ତ କରାଗଲା । ଓଡ଼ିଶାର ନେତୃବର୍ଗ ବଙ୍ଗ ପ୍ରଦେଶ ଅନ୍ତର୍ଗତ ମେଦିନୀ ପୁର, ବିହାର ଅନ୍ତର୍ଗତ ସିଂହଭୂମ, ତତ୍‌କାଳୀନ ମାନ୍ଦ୍ରାଜ ରାଜ୍ୟ ଅନ୍ତର୍ଗତ ଗଞ୍ଜାମ, ଜୟପୁର ଓ ବିଶାଖାପାଟଣା, ମଧ୍ୟପ୍ରଦେଶ ଅନ୍ତର୍ଗତ ଖଡ଼ିଆଳ ଓ ଫୁଲଝର ପ୍ରଭୃତି ଅଞ୍ଚଳକୁ ଓଡିଶା ସହ ମିଶାଇବା ପାଇଁ ଦାବି କରିଥିଲେ । ଭୁବନାନନ୍ଦ ବାବୁ ପ୍ରମୁଖ ଏହି ନେତୃବର୍ଗଙ୍କ ପ୍ରଚେଷ୍ଟାର ଫଳ ସ୍ୱରୂପ ୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେଲା ।

ଭୁବନାନନ୍ଦ ବାବୁ ଉତ୍କଳ ପ୍ରଦେଶ ଗଠନ ହେବା ପୂର୍ବରୁ ଏହାର ଏକ ସମ୍ବିଧାନ ତିଆରି କରିଥିଲେ ଓ ଏହି ସମ୍ବିଧାନରେ ଏକ ବିଶ୍ୱବିଦ୍ୟାଳୟ ଓ ହାଇକୋର୍ଟର ପରିକଳ୍ପନା କରିଥିଲେ । ସେତେବେଳେ ଇଂରେଜ ସରକାରଙ୍କର ସମର୍ଥନ ଲାଭ କରୁଥିବା କେତେକ ସମ୍ବାଦପତ୍ର ଏହି କଳ୍ପନାକୁ ଏକ ବ୍ୟୟ-ବହୁଳ କଳ୍ପନାସୌଧ ବୋଲି ଚିତ୍ରିତ କରିଥିଲେ ହେଁ ଇଂରେଜ ସରକାର ଭାରତ ପରିତ୍ୟାଗ କରିବା ପୂର୍ବରୁ ଭୁବନାନନ୍ଦଙ୍କର ସ୍ୱପ୍ନ ସଫଳ ହୋଇ ପାରି-ଥିଲା ।

୧୯୩୬ ମସିହାରେ ଓଡ଼ିଶାର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱନାଥ ଦାସ ରାଜ୍ୟ ସଚିବାଳୟ ସଙ୍ଗଠନ ନିମିତ୍ତ ଭୁବନାନନ୍ଦ ବାବୁଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଢ଼ିଥିଲେ । ତତ୍‌କାଳୀନ ମୁଖ୍ୟ ଶାସନ ସଚିବ

ପି. ଟି. ମାନସ ଫିଲ୍ଡ ଏହାର ସଭ୍ୟ ଥିଲେ । ଭୁବନାନନ୍ଦ ବାବୁ ସଚିବାଳୟ ସଙ୍ଗଠନ ନିମନ୍ତେ ବହୁ ଉପାଦେୟ ନିୟମ ପ୍ରଣୟନ କରିଯାଇଛନ୍ତି ।

## ସାମ୍ବାଦିକ ଭୁବନାନନ୍ଦ–

ସାମ୍ବାଦିକତା କ୍ଷେତ୍ରରେ ଭୁବନାନନ୍ଦଙ୍କର ଅସାଧାରଣ ପ୍ରତିଭା ଥିଲା । ବମ୍ବେରେ ଥିବାବେଳେ ସେ ସାପ୍ତାହିକ "ନାସନାଲିଷ୍ଟ" ପତ୍ରିକା ସହ ସଂପୃକ୍ତ ଥିଲେ । କେନ୍ଦ୍ର ବିଧାନ ସଭାର ସଭ୍ୟ ଥିବାବେଳେ ସେ ସାମ୍ବାଦିକତା କ୍ଷେତ୍ରରୁ ଓହରି ଯାଇ ନ ଥିଲେ । ଦିଲ୍ଲୀରେ ଅବସ୍ଥାନ କାଳରେ ଇଂରାଜୀ ପତ୍ରିକା "ରାଗଲସ", "ନିଉ ରାଗଲସ" ଓ "ଆନ ଏମ୍. ଏଲ୍. ଏ. ଡାଇରୀ" ପ୍ରଭୃତି ପତ୍ରିକାରେ ବହୁ ଉପାଦେୟ ପ୍ରବନ୍ଧ ଲେଖୁଥିଲେ ।

ଓଡ଼ିଶାରେ ଅବସ୍ଥାନ କାଳରେ "ଦି ୟଙ୍ଗ ଉତ୍କଳ" ନାମକ ଏକ ଇଂରାଜୀ ପତ୍ରିକା ସେ ପ୍ରକାଶ କରୁଥିଲେ । ଏଥିପାଇଁ ତାଙ୍କୁ ବହୁ ଖର୍ଚ୍ଚାନ୍ତ ହେବାକୁ ପଡ଼ିଥିଲା । ଏହି ପତ୍ରିକା ତା ୧୩ । ୪ । ୧୯୨୭ ମସିହାରେ ପ୍ରଥମ କରି ପ୍ରକାଶ ପାଇଥିଲା ।

## କର୍ମମୟ ଜୀବନର ଅବସାନ–

ରାଜ୍ୟସଭାର ସଭ୍ୟ ଥିବାବେଳେ ଦିଲ୍ଲୀଠାରେ ୧୯୫୮ ମସିହା ଫେବୃୟାରୀ ମାସ ୨୩ ତାରିଖରେ ଏହି ମହାନ କର୍ମବୀରଙ୍କର ଜୀବନର ଅବସାନ ହେଲା । ତାଙ୍କ ମୃତ୍ୟୁରେ ଭାରତୀୟ ରାଜନୀତି ଆକାଶର ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଉଭେଇ ଗଲା । ତାଙ୍କର ମର ଶରୀର ପବିତ୍ର ଯମୁନାର ପବିତ୍ର ନିଗମବୋଧରେ ନିଶ୍ଚିହ୍ନ ହୋଇଗଲା ।

ଃ ୦ ଃ

ନିଗମ୍‌ବୋଧ ଘାଟ
ପ୍ଲଟ ନଂ–୧
କଳ୍ପନା ଛକ
ଭୁବନେଶ୍ୱର

# "ବାବା" ଓ "ବାପା"

ଶ୍ରୀ ଅନ୍ନଦା ଚରଣ ଦାସ

ପ୍ରାୟ ଅର୍ଦ୍ଧ ଶତାବ୍ଦୀ ତଳର କଥା । ଓଡ଼ିଶାର ତତ୍କାଳୀନ ରାଜଧାନୀ କଟକ ସହରର ରାଭେନ୍ସାକଲେଜ ନିକଟସ୍ଥ ଡଗରପଡ଼ାର ପ୍ରଥମ ଗଳିରାସ୍ତା । ଦାସ୍‌ଲେନ୍ ! ତା'ରି ଭିତରେ ପ୍ରଥମ ଦୋତାଲା କୋଠା । ଗେଟ୍ ଉପରେ ବିରାଟ ଘଞ୍ଚ ମଧୁମାଳତୀ ଲତା । ଗେଟ୍‌ର ଦୁଇ ପାଖରେ ଦୁଇଟି ମାର୍ବଲ ଫଳକରେ ଲେଖା । ଏକପାଖରେ ଧଳା ମାର୍ବଲଫଳକ ଉପରେ ଲେଖାହୋଇଚି B.N. DAS, VAKIL. ଆଉ ଆରପାଖରେ କଳା ମାର୍ବଲ୍ ଉପରେ ଲେଖାଅଛି B. DAS ଓ ତା' ତଳକୁ ବିଲାତ ଫେରନ୍ତା ଡିଗ୍ରୀଗୁଡ଼ିକ (AMICE, AMIEE Glasgow) । ତଳକୁ ଲେଖାଯାଇଚି Consulting Engineer.

ଏଇ ଦୁଇଟି ଓଡ଼ିଶା ତଥା ସାରା ଭାରତର ଗୌରବମୟ ନାମ, ଓଡ଼ିଶାର ଚିର ସ୍ମରଣୀୟ ନାମ, ଚିର ନମସ୍ୟ ବ୍ୟକ୍ତିତ୍ୱ– ସ୍ୱାମୀ ବିଚିତ୍ରାନନ୍ଦ ଦାସ ଓ ଭୁବନାନନ୍ଦ ଦାସ– ମୋର 'ବାବା' ଓ 'ବାପା' ! ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ବିଶ୍ୱ ପ୍ରସିଦ୍ଧ ଅହିଂସ ସ୍ୱାଧୀନତା ସଂଗ୍ରାମର ଦୁଇରଥୀ ବିଚିତ୍ରାନନ୍ଦ ଓ ଭୁବନାନନ୍ଦ । ଆଦର୍ଶ ଚରିତ୍ର, ଅନାବିଳ ଦେଶପ୍ରୀତି, ଅଭୁତ ସ୍ୱାର୍ଥତ୍ୟାଗ ଓ ଅଶ୍ରୁତପୂର୍ବ ସାହସର ମୂର୍ତ୍ତିମନ୍ତ ପ୍ରତୀକ ସେ ଦୁହେଁ । 'ବାବା' ବିଚିତ୍ରାନନ୍ଦ ଦାସ ଓ ବାପା ଭୁବନାନନ୍ଦ ଦାସ । 'ବାବା' କୁଶବାବୁ, 'ବାପା' ଲବବାବୁ । ସେମାନେ ଥିଲେ ଯମଜଭ୍ରାତା । ସତେ ଯେପରି ବିଧାତା ଏ ଦୁଇଟି ମନୁଷ୍ୟକୁ ଗୋଟିଏ ଉପାଦାନରେ ଗଢ଼ିଦେଇଥିଲା । ଗୋଟିଏ ବୃନ୍ତରେ ଦୁଇଟି ପୁଷ୍ପ, ଗୋଟିଏ ଆକାଶରେ ଦୁଇଟି ଜାତୀୟଜ୍ୟୋତିଷ୍କ 'ବାବା' ଓ 'ବାପା' ।

'ସମାଜ'ରୁ ସେଦିନ ପଢ଼ିଲି ଯେ "✓ ବିଚିତ୍ରାନନ୍ଦ ଓ ଭୁବନାନନ୍ଦ ସ୍ମରଣିକା"ଟି ପ୍ରକାଶ ପାଇବ ତାଙ୍କର ଜନ୍ମ ଶତବାର୍ଷିକ ଉତ୍ସବରେ । ଯେଉଁମାନେ ଏହି ଦୁଇଜଣଙ୍କସହ ସମ୍ପୃକ୍ତ ଥିବେ ଅବା ସେମାନଙ୍କ ବିଷୟରେ ଯତ୍କିଞ୍ଚିତ୍ ଜାଣନ୍ତି ସେ ବିଷୟରେ ଏକ ଲେଖା ପଠାଇବାପାଇଁ କର୍ମକର୍ତ୍ତାମାନେ ନିବେଦନ

କରିଛନ୍ତି । ହଠାତ୍ ମୋର ମନ ଚହଲିଗଲା । ଚଳଚ୍ଚିତ୍ର ରିଲ୍ ଗୁଡ଼ିକପରି ମୋର ମାନସପଟରେ ସେଇ ଅର୍ଦ୍ଧଶତାବ୍ଦୀ ତଳର କେତେ ସ୍ମୃତି ଉଙ୍କିମାରି ଆସିଲା । ଭାବିଲି ସେଥିରୁ କିଛି ନ ଲେଖିଲେ ମୋର କର୍ତ୍ତବ୍ୟରେ ଅବହେଳା ହେବ । ମୁଁ ଐତିହାସିକ ନୁହେଁ କି ଲେଖକ ନୁହେଁ । ମୋର ଛୋଟ ବୁଦ୍ଧିରେ ଯାହା କିଛି ଅତୀତ ସ୍ମୃତି ମନେ ପଡୁଛି ତାହା ଏଠି ଠିକେ ଠିକେ ସୂଚାଇ ଦେଉଛି ।

ସେଇ ଡଗରପଡ଼ାରେ ବାବା ବିଚିତ୍ରାନନ୍ଦଙ୍କ ଘର ସାମନାରେ ମୋର ଅଜାଙ୍କର ଘର । ଗଜକିଶୋର ଦାସ (ଓରଫ ମହାନ୍ତି) ମୋର ଅଜା । ମଧୁ-ବାରିଷ୍ଟରଙ୍କ ପି: ଏ: ( ଷ୍ଟେନୋ ) ଗଜକିଶୋର ଦାସ । ବେଣ୍ଟକାରର ପ୍ରଖ୍ୟାତ କରଣ ଗଜକିଶୋର ମହାନ୍ତି । ମୋର ଜନ୍ମ କଟକ କାଳୀଗଳିରେ କିନ୍ତୁ ଅଧିକାଂଶ ସମୟରେ ମାମୁ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି ଓ ଅଜା ଗଜକିଶୋରଙ୍କ ଘରେ କଟେ । 'ବାବା' ଓ 'ବାପା' ମୋର ଅଜାଙ୍କୁ ଏକ ସ୍ୱତନ୍ତ୍ର ସମ୍ମାନ ଦିଅନ୍ତି ଓ ତାଂକ ପରିବାରବର୍ଗଂକ ସହ ଅତିଶୟ ଆତ୍ମୀୟତା ବନ୍ଧନରେ ବାନ୍ଧି ହୋଇଥାନ୍ତି ।

'ବାପା' (ଲବବାବୁ)ଙ୍କର ତିନିପୁଅ ଚାରିଝିଅ । ଚିତ୍ତରଞ୍ଜନ (ବାବୁଭାଇ,) ମତିରଞ୍ଜନ (ଆବୁ), ଉତ୍କଳରଞ୍ଜନ (ଅଜୁ), କମଳା (ଗୌରୀଅପା), କୁମାରୀ (କୁମଅପା), ପ୍ରମିଳା (ପାପୁ) ଓ ସରଳା (କୁନି) । ସେମାନଙ୍କ, ସହିତ ମୁଁ ମଧ୍ୟ ମିଶି ଯାଇଥାଏ । ଗୌରୀ ଅପା ଆମ ସବୁ ପିଲାଙ୍କ ମଧ୍ୟରେ ବଡ଼ । ଭାରି ସ୍ନେହୀ, ସବୁ ପିଲାଙ୍କୁ ଭାରି ଶ୍ରଦ୍ଧା କରନ୍ତି । ମମତାର ଗୋଟିଏ ଡୋରରେ ସମସ୍ତଙ୍କୁ ବାନ୍ଧି ରଖିଥାନ୍ତି । ଏଣୁ 'ବାବା' ଓ 'ବାପା' ଡାକ ସମସ୍ତଙ୍କର । ସଭିଙ୍କର ସେ 'ବାବା' ଓ 'ବାପା' । ମୁଁ ବି ଡାକି ଆସିଛି ପିଲାଦିନୁ ସେ ଦୁଇ ମହାପୁରୁଷଙ୍କୁ 'ବାବା' ଓ 'ବାପା ।' ବାବାଙ୍କ ବିବାହିତା କନ୍ୟା ଲାବଣ୍ୟ ଅପା । ତାଙ୍କର କି କଅଁଳ କଥା—କି ଆଦର ଆମମାନଙ୍କୁ । ସର୍ବୋପରି 'ବୋଉ' (ଭୁବନାନନ୍ଦଙ୍କ ସହଧର୍ମିଣୀ ରୁକ୍ମିଣୀ ଦେବୀ ) ସାକ୍ଷାତ୍ ମୋର ମା' ଭଳି । ତାଙ୍କର କଥାବାର୍ତ୍ତା ଓ ବ୍ୟବହାରରେ ଆମ ସମସ୍ତଙ୍କୁ ବାନ୍ଧି ରଖିଥାନ୍ତି । ସେ କି ଶ୍ରଦ୍ଧା ! କଦାପି ଭୁଲିବାର ନୁହେଁ ।

ଓପରଓଳି ହେଲେ ସେ ଘରେ ସବୁ ପିଲାଏ ଏକାଠି ବସି ଖେଳିବୁ । ଖେଳିବାପୂର୍ବରୁ କିଛି କିଛି ଜଳଖିଆ ବୋଉ ପରଷିବେ । 'ବାପା' ନିଜେ

ଦିଲ୍ଲୀରୁ ଆଣିଥିବା ବିସ୍କୁଟ ଓ ଟଫିମାନ ଆମ ହାତରେ ଦେବେ । ଛାତ ଉପରେ ବସି ଆମେ ସବୁ ପିଲେ ରୁମାଲ ଗେରି ଖେଳିବୁ । Lexicon ଖେଳିବୁ । ଅନ୍ତକଡ଼ି କରିବୁ ଇତ୍ୟାଦି ଇତ୍ୟାଦି । ସେ ଅଦୂରରେ ଏକ ଚୌକିରେ ବସି ଆମର ଶିଶୁ ଚପଳ୍ୟ ଭରା ଖେଳକୌତୁକ ଦେଖି କି ଖୁସି ହୁଅନ୍ତି ! ବିଶ୍ୱସ୍ତ ଭୃତ୍ୟ ଉତ୍ସବ ମଥାରେ ତୈଳ ଘଷୁଥାଏ ।

'ବାବା' ତଳ ମହଲରେ ରହନ୍ତି । ସକାଳୁ ଧୂପଟା ଆମ ପିଲାଙ୍କର ତଳେ ହୁଏ । ସକାଳୁ ମାଣ୍ଡିଆ ଜାଉ, ଚୁଡ଼ାଭଜା, ମୁଢ଼ି ଇତ୍ୟାଦି ଦେଶୀୟ ପ୍ରାତଃଭୋଜନ ତଳ ଶୋଇବାଘର ବାରଣ୍ଡାରେ ପରିବେଷଣ କରାଯାଏ । ସେ ବାରଣ୍ଡାରେ ବାଉଁଶ କାଠିର ଏକ ବଡ଼ ଚିକ ଝାଲର ଓହଳିଥାଏ । ଅଳ୍ପ କେତେଖଣ୍ଡ ଚୌକି ଓ ଟିପୟଟିଏ ଥାଏ । ତା' ଉପରେ ଆସି ଥୁଆହୁଏ ଦେଶୀ ଜଳଖିଆ । ସକାଳ ପ୍ରାୟ ସାତଟାରେ 'ବାବା' ଜଳଖିଆ ଖାଆନ୍ତି । ସେଇ ଆସରକୁ ଆସନ୍ତି ଆମ ପିଲାମାନଙ୍କ ଛଡ଼ା ପାଠକଜୀ (ପଣ୍ଡିତ ଅନସୂୟା ପ୍ରସାଦ ପାଠକ), ସାହିର ପୁରୁଣା ବୟସ୍କ ବ୍ୟକ୍ତି ଶ୍ରୀ ଲକ୍ଷ୍ମଣ ସ୍ୱାଇଁ, କଳାବିତ୍ ବିପିନ୍ ଚୌଧୁରୀ, ଶିକ୍ଷାଗୁରୁ ବିଦ୍ୟାଧର ବର୍ମା ଓ ଆଉ ସରକାରୀ ଓ ବେସରକାରୀ ଲୋକ ପ୍ରତିଦିନ । ଆଉ ଆମେ କେତେଜଣ ପିଲା ବି ଥାଉ । 'ବାବା' ସମସ୍ତଙ୍କ ସଙ୍ଗେ ବସି ଏକତ୍ର ସେଇ ଜଳଖିଆ ଖାଇବାକୁ ଓ କଥା-ବାର୍ତ୍ତା ହେବାକୁ ଭାରି ଭଲପା'ନ୍ତି । ମନରେ କି ଆନନ୍ଦ ! କି ତୃପ୍ତି !! କି ସରାଗ !!

ଆଜି ମନେ ପଡୁଛି 'ବାବା' ଓ 'ବାପା' ମତେ ଡାକୁଥିଲେ 'ବୁଗ୍ସ' । ଟିକାଭାଇ ହେରିକା କେତେବେଳେ କେମିତି ପରିହାସରେ ଡାକି ଦେଉଥିଲେ 'ବୁଗ୍ସ ଖାଁ' । ମୋର ଡାକ ନାମ ଥିଲା ବୁଚି । କିନ୍ତୁ 'ବାବା'ଙ୍କ ଘରେ ମୋର ଡାକନାମ 'ବୁଗ୍ସ' । ମୁଁ ମଧ୍ୟ ତାଙ୍କର ସେ ପ୍ରକାରର ସମ୍ବୋଧନରେ ଟିକିଏ ହସିଦେଇ ମୌନ ସମ୍ମତି ଜଣାଏ ।

ଅଧିକାଂଶ ଛୁଟିଦିନ ବା ରବିବାର ଦିନଗୁଡ଼ିକରେ ସେ ଘରେ ବନ୍ଧୁ ଗହଳି ଟିକେ ବେଶୀ ହୁଏ । ଆମ ସାଙ୍ଗରେ ମିଶିବାକୁ ଆସନ୍ତି ମୁରଲୀଭାଇ, ଜଗାମାମୁ (ଶ୍ରୀ ଜଗନ୍ମୋହନ ପଟ୍ଟନାୟକ), ବଙ୍କୁଭାଇ, ଟିକାଭାଇ (ଜଗତ୍-କୃଷ୍ଣ ଦାସ), କୁନିଆ ଭାଇ ପ୍ରଭୃତି ବୟୋଜ୍ୟେଷ୍ଠ ଆତ୍ମୀୟମାନେ । ଆମକୁ ସବୁ

ଶ୍ରଦ୍ଧା କରନ୍ତି । କେତେ ଭଲଭଲ ଉପଦେଶମାନ ଦିଅନ୍ତି । ଭଲ ଭଲ ଗପବହି ପଢ଼ିବାକୁ ଦିଅନ୍ତି ଇତ୍ୟାଦି ଇତ୍ୟାଦି । ଦେବଅପା (ଦେବହୂତି ଦେଈ)ଙ୍କୁ ଆମେ ଜଣେ ବିଶିଷ୍ଟ ନାରୀ କବି ଭାବରେ ସ୍ୱତନ୍ତ୍ର ସମ୍ମାନ ଦେଉ ।

ସେ ପରିବାରର କେତେ ଯେ ସ୍ମୃତି ମୋର ମନରେ ଅଛି, ସବୁ ଲେଖିଲେ ଖଣ୍ଡେ ପୋଥି ହେବ କି କଣ ! ଦିନକର ଗୋଟିଏ ଛୋଟ ମଜା ଘଟଣା ମନେପଡୁଛି । ସେ ସାହିର ବୟୋବୃଦ୍ଧ ବ୍ୟକ୍ତି ଲକ୍ଷ୍ମଣ ସାଆନ୍ତ (ଜଣେ ବୟସ୍କ କାଉନ୍‌ସିଲର) ଆସନ୍ତି, ବାବାଙ୍କର ଜଳଖିଆ ଟେବୁଲ୍‌ରେ ପଡ଼ିଥିବା ବିଭିନ୍ନ ପତ୍ରପତ୍ରିକା ଓ ଦୈନିକ ଖବରକାଗଜ ପଢ଼ିବାକୁ । 'ସମାଜ' ପଢ଼ିବାକୁ ସେ ସବୁଠୁ ବେଶୀ ଆଗ୍ରହୀ । କିନ୍ତୁ ତାଙ୍କର ସେ 'ସମାଜ' ପଢ଼ା କଣ ଏମିତି ସେମିତି ? ପୂରା ପ୍ରଥମ ପୃଷ୍ଠା ''ସମାଜ', ପ୍ରତିଷ୍ଠାତା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ଠାରୁ ଆରମ୍ଭକରି ସବାଶେଷ ପୃଷ୍ଠା ଶେଷଧାଡ଼ି ମୁଦ୍ରାକର ଓ ସମ୍ପାଦକ ଶ୍ରୀ ଲିଙ୍ଗରାଜ ମିଶ୍ର ପର୍ଯ୍ୟନ୍ତ । ଧଳାନିଶୁଆ ନାକ ଉପରେ ଗୋଲ ପୁରୁଣାକାଳିଆ ଚଷମାଟାଏ ପିନ୍ଧି କାଗଜ ଖଣ୍ଡକ ଉପରେ ଆଖି ମାଡ଼ିଦେଇ ପଢ଼ା ଆରମ୍ଭ କରିବେ ଯେ ପୂରା ଦି' ଘଣ୍ଟା । ମୂଳରୁ ଶେଷ ଅକ୍ଷର ପର୍ଯ୍ୟନ୍ତ । ଥରେ ମୁଁ ପରୀକ୍ଷାଫଳ ଟିକେ ଦେଖିବାକୁ ତାଙ୍କ ପାଖରେ ଠିଆହେଇଥାଏ । ପିଲାଲୋକ ତାଙ୍କୁ କିଛି କହିପାରୁ ନ ଥାଏ କି କାଗଜଟା ମାଗିପାରୁ ନ ଥାଏ । କିନ୍ତୁ ତାଙ୍କ ଆଖିରେ ପଡ଼ିଲାପରି ଠିଆ ହୋଇ ରହିଥାଏ । ଲକ୍ଷ୍ମଣ ସାଆନ୍ତ ମଧ୍ୟ କାଗଜଟିକୁ ଛାଡୁନଥାନ୍ତି । ପୂରା ଦି' ପଟୁ ଦି' ହାତରେ ମୁଠାଇଧରି ଗୋଲ ଚଷମା ଯୁକ୍ତ ଆଖି ଦି'ଟାକୁ ମାଡ଼ିଦେଇ ମନମୁନ ଚଇତନ ଦେଇ କାଗଜ ପଢୁଥାନ୍ତି । 'ବାବା' ହଠାତ୍ କଣ ପାଇଁ ବାରଣ୍ଡାକୁ ଆସିଲେ । ମୁଁ ନମସ୍କାର କଲି । କହିଲେ, ''କଣ କି ବୁଲୁ ?'' ମୁଁ ଟିକିଏ ଶଙ୍କିତ ହୋଇ କହିଲି, ''ଟିକିଏ ପରୀକ୍ଷା ଫଳ ଦେଖିବି ।'' ସେ କହିଲେ, ''ହଉ ଦେଖ୍...'' କହି ଭିତରକୁ ଚାଲିଗଲେ । କିଛି ସମୟ ପରେ ପୁଣି ବାରଣ୍ଡାକୁ ଆସିଲେ । ଦେଖିଲେ ମୁଁ ସେଇପରି ଲକ୍ଷ୍ମଣ ସାଆନ୍ତଙ୍କ ପାଖରେ ଲାଗି ଅତି ଭଦ୍ରତା ସହକାରେ ଠିଆ-ହୋଇ ଅପେକ୍ଷା କରିଚି ଟିକିଏ ପରୀକ୍ଷା ଫଳ ଦେଖିବି ବୋଲି । କିନ୍ତୁ ତାଙ୍କର କୋଉ ସରୁଛି ନା ମୁଁ ଦେଖୁଛି ! ସେ ଅବିଚଳିତ । ଜିଦି କଲାଭଳିଆ କାଗଜକୁ ମୁଠେଇ ଧରିଛନ୍ତି । 'ବାବା' ମତେ ପୁଣି ପଚାରିଲେ—''କଣ ହେଲା ? ଦେଖିଲୁ

ନାହିଁକି ?” ମୁଁ ଅପ୍ରତିଭ ହୋଇ କହିଲି, “ନା, ସେ ପଢୁଛନ୍ତି...” ବାବା ବୋଧହୁଏ ବିରକ୍ତ ହୋଇଗଲେ । କହିଲେ, “ସ୍ୱାଇଁବାବୁ, ଆପଣ ତାକୁ ଟିକିଏ କାଗଜଟା ଦିଅନ୍ତୁ, ସେ ଟିକିଏ ତାର ପରୀକ୍ଷା ଫଳ ଦେଖି ଚାଲିଯିବ ।” ସେଇଠୁ ସ୍ୱାଇଁଙ୍କ ଧ୍ୟାନ ଭାଙ୍ଗିଲା । ସେ କାଗଜଟି ଦେଲେ ଓ ମୁଁ ପଢ଼ିଦେଖିଲି ମୋର ନାଁ ବାହାରିଚି ।

ଆଉ ଦିନକର କଥା । ରେଭେନ୍ସା କଲେଜରେ ପଢ଼ିବା ନିମନ୍ତେ ମୁଁ ସବୁ ବ୍ୟବସ୍ଥା କରି ସାରିଥାଏ । ମୋର ପିତାଙ୍କର ପରଲୋକ ହେବାପରେ ଆମର ଆର୍ଥିକ ଅବସ୍ଥା ଭଲ ନ ଥାଏ । ଡଗରପଡ଼ାରୁ ରେଭେନ୍ସା କଲେଜ ଯିବାଟା ଭାରି ଅସୁବିଧା ହେଉଥାଏ । ତଥାପି କେତେଦିନ କଷ୍ଟରେ ଯିବା-ଆସିବା କଲାପରେ ଅତି ଅସୁବିଧା ହେବାରୁ ସାଇକେଲଟିଏ କିଣିବାକୁ ଯତ୍ନ କଲି । ସେଦିନ ସକାଳେ ତଳ ବାରଣ୍ଡାରେ ବସି ଖବର କାଗଜ ପଢୁଛି । ଅତିଥିମାନେ କେହି ଆସିନାହାନ୍ତି । ବାବା ହଠାତ୍ ବାହାରି ଆସିଲେ । କଣ ତାଙ୍କର ମନ ହେଲା କେଜାଣି ମତେ ପଚାରିଲେ, “କିରେ ଏମିତି ଶୁଖିଲା ଦିଶୁଚୁ କାହିଁକି ? ଖାଇନୁ କି ?” ମୁଁ ଲାଜେଇଗଲି । ପୁଣି ପଚାରିଲେ । ମନ ଆବେଗରେ କହି ପକାଇଲି, “କଲେଜ ଯିବାକୁ ଅସୁବିଧା ହେବାରୁ ସାଇକେଲଟିଏ କିଣିବାକୁ ଯୋଗାଡ଼ କରିଛି । ପନ୍ଦରଟି ଟଙ୍କା ନିଅଣ୍ଟ ପଡୁଛି ।” ଏକା ନିଃଶ୍ୱାସରେ ଏତକ ଡରିଡରି କହିପକାଇ ମୋର ମୁହଁ ଲାଲ ପଡ଼ିଗଲା । ତାଙ୍କ ମୁହଁରେ ଭବାନ୍ତର ଲକ୍ଷ୍ୟ କଲି । ସେ ସଙ୍ଗେ ସଙ୍ଗେ ଭିତରକୁ ଯାଇ ପନ୍ଦର ଟଙ୍କା ଆଣି ମୋ ହାତରେ ଦେଲେ ଓ ପିଠି ଥାପୁଡ଼େଇ ଦେଇ କହିଲେ, “ଆଜି ଯାଇ ସାଇକେଲଟି କିଣିନେବୁ । ଯାଃ ।” ଭାତହାଣ୍ଡିରୁ ଗୋଟିଏ ଚିପିଲାପରି ମୁଁ ସେଇଠି ସେଇଦିନ ପାଇଥିଲି ବାବାଙ୍କର ମୋ ପ୍ରତି ଶ୍ରଦ୍ଧା ବିଷୟରେ ।

ତା’ ଛଡ଼ା ବାବାଙ୍କର କେତେ ଦାନଧର୍ମ ମୁଁ ଦେଖିଚି । ପ୍ରତି ରବିବାର ଦିନ ଭିକାରୀ ଦୁଃଖୀ ରଙ୍କୀଙ୍କର ସେ ଦୁଆରେ ପ୍ରବଳ ଭିଡ଼ ହୁଏ । ‘ବାବା’ଙ୍କର ନିର୍ଦ୍ଦେଶ ସମସ୍ତଙ୍କୁ ସାହାଯ୍ୟ ଦିଆଯିବ । କେହି ଖାଲିହାତରେ ଫେରିବେ ନାହିଁ । ଦୁଆରୁ ସେ ଗହଳି କୋଳାହଳ ମଧ୍ୟରେ ଗୈରିକ ବସନା ‘ବାବା’ ସ୍ୱାମୀଜୀଙ୍କର ସେ ଦାନୀ ବେଶ ଯେ ଦେଖିଛି ସେ କେବେ ଭୁଲିପାରିବ ନାହିଁ । ଦୟା ଓ କରୁଣାର ଅବତାର ସ୍ୱାମୀ ବିଚିତ୍ରାନନ୍ଦ !! ଏହାବ୍ୟତୀତ ଗରିବ ମେଧାବୀ

ଛାତ୍ରଙ୍କୁ ଆଥକ ସାହାଯ୍ୟ ସହାନୁଭୂତି । ପୁସ୍ତକ ସାହାଯ୍ୟ ଇତ୍ୟାଦି ସେ ଦେବାର ମୁଁ କେତେଯେ ଦେଖିଛି ତା'ର କଳନା ନାହିଁ ।

କଳାବିତ୍, କଳାର ପୂଜାରୀ ଓ ଦୁଃସ୍ଥ କଳାକାରମାନଙ୍କ ପ୍ରତି ମଧ୍ୟ ସେ ଦୁଇଭଇଙ୍କର ସାହାଯ୍ୟ ସହାନୁଭୂତିର ହସ୍ତ ସର୍ବଦା ପ୍ରସାରିତ ହୋଇଥାଏ । ଛୋଟବଡ଼ ବହୁ କଳାକାର, ଶିଳ୍ପୀ 'ବାବା' ଓ 'ବାପା'ଙ୍କର ସାନ୍ନିଧ୍ୟ, ସାହାଯ୍ୟ ଓ ସହାନୁଭୂତି ପାଇ ଜୀବନରେ ଉନ୍ନତି କରିଛନ୍ତି । ଆଜି ମନେପଡ଼ିଯାଉଛି ସେ କାଳର କଥା । ଓଡ଼ିଶାର ବିଶିଷ୍ଟ କଳାଗୁରୁ ଶିଳ୍ପୀ ଶ୍ରୀ ବିଦ୍ୟାଧର ବର୍ମା (ବି: ବର୍ମା) ସେତେବେଳେ ପ୍ରାୟ ଅଧିକାଂଶ ଦିନ ସକାଳେ 'ବାବା' (ବିଚିତ୍ରା ନନ୍ଦ)ଙ୍କ ପାଖକୁ ଆସୁଥାନ୍ତି । ଘ୍' ଜଳଖିଆ ଖାନ୍ତି । ଉଭୟଙ୍କ ମଧ୍ୟରେ ନାନା କାର୍ଯ୍ୟକ୍ରମ ସମ୍ପର୍କରେ ଆଲୋଚନା ହୁଏ । ବିଦ୍ୟାଧର ବାବୁଙ୍କୁ ବାବା ବହୁତ ସାହାଯ୍ୟ କରିଛନ୍ତି । ଶିଳ୍ପୀଙ୍କର ସୁନ୍ଦର ଚେହେରା, ଧୋତି ପଞ୍ଜାବି, ମୁଣ୍ଡରେ କୁଞ୍ଚୁକୁଞ୍ଚିଆ ବାଳ ତଳେ ଆଖିରେ ସୁନେଲି ଚଷମା । ଖଣ୍ଡିଏ ରିକ୍ସାରେ ଆସନ୍ତି ଓ ଯାଆନ୍ତି । ମୋର କଳାପ୍ରାଣତା ଦେଖି କି କଣ ମୋତେ ଭଲପାନ୍ତି ଓ ମୋତେ କଳାର ଚର୍ଚ୍ଚା କରିବାକୁ, ଛବି ଆଙ୍କିବାକୁ ବହୁତ ପ୍ରେରଣା ଦିଅନ୍ତି, ଉତ୍ସାହିତ କରନ୍ତି । ମୋର ସିନେରୀ ଡ୍ରଇଂ ଖରି ଭଲ ହେଉଥାଏ । 'ବାବା' କହନ୍ତି, "ବିଦ୍ୟାଧର ବାବୁ, ୟା'ର ହାତ ଭଲ ଅଛି । ୟା'କୁ ଆପଣ ଟିକେ ବତାଇ ଦିଅନ୍ତୁ...... "

'ବାପା' (ଭୁବନାନନ୍ଦ)ଙ୍କ କଳାପ୍ରାଣତାର ନିଦର୍ଶନ ମଧ୍ୟ ମୁଁ ଦେଖିଛି । ଓଡ଼ିଶାର ତତ୍କାଳୀନ ଅନ୍ୟତମ ଶିଳ୍ପୀ, ମୂକବଧିର କଳାଗୁରୁ ଶ୍ରୀ ବିପିନବିହାରୀ ଚୌଧୁରୀ ବିଲାତରୁ ଚିତ୍ରକଳା ସମ୍ପର୍କରେ ବିଶେଷଜ୍ଞାନ ଲାଭକରି ଫେରିଥାନ୍ତି । ସେ ସେତେବେଳକାର ସବୁ ବିଶିଷ୍ଟ ନେତୃସ୍ଥାନୀୟ ଜନନାୟକ-ମାନଙ୍କର ଆବକ୍ଷ ଚିତ୍ର (Portrait) ମାନ ଅତି ଚମତ୍କାର ଭାବରେ ଆଙ୍କୁଥାଆନ୍ତି । ସେ ଦିନେ ଆସି 'ବାପା'ଙ୍କୁ ଦେଖାକଲେ । ମୁଁ ଦେଖିଛି ବାପା ହସିହସି ସାଦରେ ତାଙ୍କୁ କୁଣ୍ଢାଇ ପକାଇଲେ । ଉପର ଘରେ ନିରୋଳାରେ ଛବି ଅଙ୍କା ପର୍ବ ଆରମ୍ଭ ହୁଏ । ବାପା ଉପର ମହଲାର ପୂର୍ବପଟ ଝରକା ପାଖକୁ ଗୋଟିଏ ଚେଆର୍‌ରେ ବସନ୍ତି । ତାଙ୍କ ଦେହରେ ନିର୍ମଳ ଆଲୋକ ପଡୁଥାଏ । ବିପିନ୍ ବାବୁ କକ୍ଷର ମଧ୍ୟ ସ୍ଥଳରେ ବସି 'ବାପାଙ୍କୁ' ଅନେଇ ଅନେଇ ସ୍କେଚ୍ କରୁ-

ଥାନ୍ତି । କି ଏକାଗ୍ରତା ! ଏ ଘଟଣା ଦେଖି ମୋର କୌତୂହଳ ଜନ୍ମିଲା । 'ବାପା' କଣ ଭବିଲେ କେଜାଣି ମତେ ସ୍ମିତହାସ୍ୟରେ ଅନୁମତି ଦେଲେ ସେ ଘରେ ଗୋଟିଏ ପାଖକୁ ଚୁପ୍‌ଚାପ୍ ବସି ଦେଖିବାକୁ । ମୋର ମନେ ଅଛି ତାଙ୍କ ଛବି ଅଙ୍କା ସରିବା ପର୍ଯ୍ୟନ୍ତ ମୁଁ ବିପିନ୍ ବାବୁଙ୍କର ଆସିବାବେଳ ଉର୍ଦ୍ଧ ନିୟମିତ ଯାଇ ଉପର ମହଲରେ ଚୁପ୍ ଚାପ୍ ବସେ ଓ ଛବି ଅଙ୍କା ଦେଖେ । ମଝିରେ ମଝିରେ କେତେବେଳେ 'ବାପା' ସେ ପଟୁ ଓ ବିପିନ୍‌ବାବୁ ଏ ପଟୁ ମୋ ଆଡ଼କୁ ଅନାଇ ଦେଇ ଟିକିଏ ଟିକିଏ ହସି ଦେଉଥାନ୍ତି । ଶେଷରେ ଯେଉଁ ଦିନ ସମ୍ପୂର୍ଣ୍ଣ ଅଙ୍କା ହୋଇଥିବା ଛବିଟିକୁ ବିପିନ୍‌ବାବୁ ଆଣି ମତେ ଦେଖାଇଲେ 'ବାପା' ଓ ଆମେ ଅନ୍ୟ ପିଲମାନେ ସମସ୍ତେ ଦେଖି ଅବାକ୍ ହୋଇଗଲୁ । ଅବିକଳ 'ବାପା'ଙ୍କର ଆବକ୍ଷ ଛବି । ତା' ପରେ ପରେ ବିପିନ୍ ବାବୁଙ୍କ ସଙ୍ଗେ ଘନିଷ୍ଠତା ଜନ୍ମିଲା । ତାଙ୍କ ଘରକୁ ଯାଇ ତାଙ୍କର ଚିତ୍ର ଗ୍ୟାଲେରୀ ଦେଖିବାକୁ ସେ ଆମ ପିଲମାନଙ୍କୁ ସାଦର ନିମନ୍ତ୍ରଣ କଲେ । ମୁଁ ବହୁଥର ଯାଇଛି ଓ ମୋ ଜୀବନରେ ସେ ମଧ୍ୟ ବହୁତ ଉତ୍ସାହ ଦେଇଛନ୍ତି ।

ପୁଣି ଭସିଆସୁଚି ଆଉ ଏକ ସ୍ମୃତିଗୁଚ୍ଛିଏ । 'ବାବା' ଓ 'ବାପା'ଙ୍କର ବଗିଗ୍ଚ ବୁଲ କଥା । ସେ ଦୁହେଁ ମଝିରେ ମଝିରେ ସାନସାନ ପିଲମାନଙ୍କୁ ନେଇ ବଗିଗ୍ଚ ବୁଲିଯାନ୍ତି । ରବିବାର ବା ଛୁଟିଦିନମାନଙ୍କରେ ଅବସର କଟାଇବାକୁ ସେଇ ଟମ୍‌ଟମ୍ ଘୋଡ଼ାଗାଡ଼ିରେ ବସି ଟାଉନ ହଲ୍ ରୋଡ୍‌ରେ ଥିବା ତାଙ୍କର ବଗିଗ୍ଚକୁ ଆମମାନଙ୍କୁ ସାଙ୍ଗରେ ନେଇ ବୁଲିଯିବାକୁ ଭରି ଭଲ ପାଆନ୍ତି । ମୁଁ ମଧ୍ୟ କେତେଥର ପିଲମାନଙ୍କ ସାଙ୍ଗରେ ମିଶି ତାଙ୍କ ସଙ୍ଗେ ବଗିଗ୍ଚ ଯାଇଛି । ସେଠାରେ ପହଞ୍ଚିଲେ ଆମ୍ଭମାନଙ୍କୁ ନାନାପ୍ରକାର ଖାଦ୍ୟ ମିଳେ । ତା'ଛଡ଼ା ଫେରିବା ବାଟରେ ଚୌଧୁରୀ ବଜାର ଦେଇ ଗାଡ଼ି ଆସେ । ତତ୍କାଳୀନ ବିଶିଷ୍ଟ କୁସ୍ତିବିଶାରଦ 'ବନାପହିଲିମାନ'ଙ୍କ ଚୌଧୁରୀ ବଜାର ତେଜଗତି ଦୋକାନ ପାଖରେ ଆମ ଗାଡ଼ି ଯେମିତି ଅଟକେ ନିଜେ ପହିଲିମାନ ବାବୁ ତାଙ୍କ ଦୋକାନ ଉପରୁ ଓହ୍ଲାଇ ଆସି ଆନନ୍ଦରେ 'ବାବା' ଥାନ୍ତୁ କି 'ବାପା' ଥାନ୍ତୁ ସେମାନଙ୍କୁ ଦୋକାନକୁ ପାଛୋଟି ନିଅନ୍ତି ଓ ଭକ୍ତିପୂର୍ଣ୍ଣ ଆଦରମିଶା ଭଷାରେ କଥାବାର୍ତ୍ତା କରନ୍ତି । ଆମ ପିଲମାନଙ୍କୁ ବହୁତ ଖଜୁରକୋଳି, କିସ୍‌ମିସ୍, ବାଦାମ, ପେସ୍ତା, ଆଖ୍‌ରୋଟ୍, ମନକା ଇତ୍ୟାଦି ନାନାପ୍ରକାର ଫଳ

ଖୁଆନ୍ତି । ଆମେ ସବୁ ସେତକ ଖାଇ ମହା ଆନନ୍ଦରେ ଘରକୁ ଫେରୁ । 'ବାବା' ଓ 'ବାପା' ବାଟଯାକ ଗାଡ଼ିରେ ଆମ ସଙ୍ଗେନାନାପ୍ରକାରର ଶିକ୍ଷଣୀୟ କଥା ଗପି ଗପି ଆସୁଥାନ୍ତି । ସେଥିରେ ତାଙ୍କର କି ଆନନ୍ଦ !

ଥରେ ବାବୁଭାଇ (ଚିତ୍ତରଞ୍ଜନ) ଗୋଟିଏ "ଭୋଗ୍‌ଲେନ୍ଦର୍" (Voightlander) କ୍ୟାମେରା ଆଣି ସବୁପିଲାଙ୍କର ଫଟୋ ଉଠାଉଥାଆନ୍ତି । ବାପା ଉପରମହଲା ଛାତ ଉପରେ ସକାଳର କଅଁଳ ଖରାରେ ବସି ବାବୁଭାଇଙ୍କୁ ଉତ୍ସାହିତ କରୁଥାଆନ୍ତି । ସମସ୍ତଂକର ଫଟୋ ଉଠାଗଲା । ତା ଭିତରେ ବାବୁଭାଇ ମୋର ମଧ୍ୟ ଗୋଟିଏ ଫଟୋ ଉଠାଇଲେ । ସେଥିରେ, ମୋର କି ଆନନ୍ଦ ! 'ବାପା' ଭାରିଖୁସି ହେଲେ । ପିଲାଂକ ଖୁସିରେ ତାଂକର କି ଖୁସି !

ପୁରୀ ଇଲେକ୍‌ଟ୍ରିକ୍ ସପ୍ଲାଇ କାର୍ଯ୍ୟ 'ବାପା' ସେତେବେଳେ ନୂତନ ଭାବେ ଆରମ୍ଭ କରିଥାନ୍ତି । ତାଙ୍କର ସେଥିରେ କି ଅଦମ୍ୟ ଉତ୍ସାହ, କି ପରିଶ୍ରମ ! ଉଚ୍ଚ ରକ୍ତଚାପ ଥାଏ । ଦୁର୍ବଳ ଶରୀର, ତଥାପି ସେଥିରେ କି ନିଷ୍ଠା ! କି କର୍ମ-ତତ୍‌ପରତା ! ସବୁବେଳେ ଡିକ୍‌ଟେସନ (Dictation) ଚାଲିଥିବ । ଫାଇଲପତ୍ର ଦେଖୁଥିବେ । ରାଧାଭାଇଙ୍କ ସଙ୍ଗେ ଆଲୋଚନା କଣ କରୁଥିବେ । ଉଭୟେ ପୁରୀ ଯିବା ଆସିବା କରୁଥିବେ ଇତ୍ୟାଦି ଇତ୍ୟାଦି । ସବୁକାର୍ଯ୍ୟ ଶୃଙ୍ଖଳାର ସହିତ ଚାଲିଥିବ । ଆଜି ମୁଁ ଭାବୁଛି ସେତେବେଳେ ସେ ନିଜେ ସେ ପ୍ରକାରର ପରିଶ୍ରମ, ଓ ନିଷ୍ଠା ପ୍ରକାଶ କରି ନ ଥିଲେ ଆଜି 'ପୁରୀ ଇଲେକ୍‌ଟ୍ରିକ୍ ସପ୍ଲାଇ' ଭଳି ଏକ ବିରାଟ ଯୋଜନା କାର୍ଯ୍ୟକାରୀ ହୋଇପାରି ନ ଥାନ୍ତା ।

ଆଜି ଗୋଟି ଗୋଟି ହୋଇ ମନେ ପଡ଼ିଯାଉଛି ଆଉରି କେତେ ଘଟଣା । 'ବାବା'ଙ୍କ ନିର୍ବାଚନ ଉଦ୍ୟମ କଥା । ନିର୍ବାଚନ ବେଳେ ତାଙ୍କର କି ଅଟଳ ଅବିଚଳିତ ବ୍ୟକ୍ତିତ୍ୱ ମୁଁ ନିଜେ ଦେଖିଛି । ତା ପରବର୍ତ୍ତୀ କାଳରେ ହାଇ-କୋର୍ଟରେ ଆଡ୍‌ଭୋକେଟ୍ ଜେନେରାଲ ହେବା ବେଳର ବ୍ୟକ୍ତିତ୍ୱ ମଧ୍ୟ ଦେଖିଛି । ମୁଖମଣ୍ଡଳ ଧୀର, ସ୍ଥିର ଓ ପ୍ରଶାନ୍ତ । 'ବାବା' ସତେଯେପରି ଏକାଧାରରେ ଜଣେ ରାଜନୀତିଜ୍ଞ, ଆଇନଜ୍ଞ, ସମାଜସେବୀ ଓ ଦୟା, କ୍ଷମା ଏବଂ କରୁଣାର ମୂର୍ତ୍ତିମନ୍ତ ପ୍ରତୀକ । ଅନ୍ୟ ପକ୍ଷରେ 'ବାପା' ଠିକ୍ ସେଇଭଳି ଜଣେ ପ୍ରତିଭାଶାଳୀ ରାଜନୀତିଜ୍ଞ, ସୁଦକ୍ଷ ପାର୍ଲାମେଣ୍ଟାରିଆନ୍ (Veteran Parliamentar-ian ଯାହାଙ୍କୁ କି ପାର୍ଲାମେଣ୍ଟର ପିତା ବା Father of Parliament

ବୋଲି କୁହାଯାଏ), ଜଣେ ବିଜ୍ଞ ବିଲତ ଫେରନ୍ତା ଇଞ୍ଜିନିୟର କେତେ ଯଶ କେତେ ଖ୍ୟାତି ଏ ଆଖି ସବୁ ଦେଖଛି ।

କେତେ ମହାମନା ଜନନାୟକମାନଙ୍କ ସଙ୍ଗେ 'ବାବା' ଓ 'ବାପା'-ଙ୍କର ସୌଖ୍ୟ, ସଦ୍‌ଭବ, ବନ୍ଧୁତା ମୁଁ ସେଇଠି ଥାଇ ଦେଖିଛି । ସେ ବାସ-ଭବନକୁ ବିଭିନ୍ନ କାର୍ଯ୍ୟ ସଂକ୍ରାନ୍ତରେ ଅଥବା ସୌଜନ୍ୟ ସାକ୍ଷାତ୍ କରିବାକୁ ଆସନ୍ତି ପଣ୍ଡିତ ହୃଦୟନାଥ କୁଞ୍ଜରୁ, ନମସ୍ୟ ଠକ୍କରବାପା, ପୂଜ୍ୟ ସାରଙ୍ଗଧର ଦାସ, ତ୍ୟାଗୀ ଅନସୂୟାପ୍ରସାଦ ପାଠକଜୀ,ଜାତୀୟନେତା ଧେବରଭାଇ ଇତ୍ୟାଦି । ସେ ହାସପରିହାସ, କଥୋପକଥନ, କରମର୍ଦ୍ଦନ, ଆଲିଙ୍ଗନ ପ୍ରାଣଖୋଲା ଭବର ଆଦାନପ୍ରଦାନ ସବୁ ମୁଁ ଲକ୍ଷ୍ୟକରିଚି । ସେମାନେ ଆସିଛନ୍ତି, ଆତିଥ୍ୟ ଗ୍ରହଣ କରିଛନ୍ତି । ଦେଶ ଓ ଦଶଙ୍କ ପାଇଁ, 'ବାବା' ଓ 'ବାପା'ଙ୍କ ସଙ୍ଗେ ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରିଛନ୍ତି ଓ ଶେଷରେ ଆମ ଭଳି ପିଲମାନଙ୍କ ସହ ମିଶି ଆମକୁ ଶ୍ରଦ୍ଧା ପ୍ରଦାନକରି ଯାଇଛନ୍ତି । ଏ ସବୁ ଭୁଲି ହେବ ନାହିଁ ।

ପ୍ରତିବର୍ଷ ଆଉ ଗୋଟାଏ ପୁଣ୍ୟ ଦିବସକୁ ମୁଁ ବଗବର ଅନାଇଥାଏ । ତାହା ହେଉଚି ମାର୍ଚ୍ଚ ଗ୍ଟରିତାରିଖ 'ମଧୁସ୍ମୃତି' ଦିବସଟିକୁ । ମଧୁବାବୁଙ୍କ ଜନ୍ମଦିନ—ମଧୁବାରିଷ୍ଟରଙ୍କ ଜୟନ୍ତୀ । ସକାଳୁ ସକାଳୁ କଲିଜିଏଟ୍ ଛାତ୍ରମାନଙ୍କର ଏକ ପ୍ରଭତଫେରି ବାହାରେ । ସେଥିରେ ମୁଁ ଯାଏ । ପ୍ରାତଃ ସମୀରଣ ସେବନ କରି ମନରେ ଅପୂର୍ବ ପୁଲକ ଖେଳାଇ ସ୍ରୋତସ୍ୱତୀ ମହାନଦୀ କୂଳରେ ଗୋରା-କବରଠାରେ ସମସ୍ତେ ଯାଇ ଠୁଳ ହେଉ । ଅଦ୍ୱୈତବଲ୍ଲଭ ରାୟ ଓ ଲଳିତ ଦା'ଙ୍କ "ମାଆ ମାଆ ବୋଲି କେତେ ମଁ ଡାକିଲି..." ସଂଗୀତ ପରେ ମଧୁ-ବାବୁଙ୍କ ସମାଧି ଉପରେ ପୁଷ୍ପଗୁଚ୍ଛ ପ୍ରଦାନ କଲାପରେ 'ବାବା' (ବିଚିତ୍ରାନନ୍ଦ)-ଙ୍କର ସେଇ ଶୋକ ଗଦ୍‌ଗଦ ଭଷଣ ଶୁଣିବା ପାଇଁ ମୋର ପ୍ରବଳ ଆଗ୍ରହ । 'ବାବା' ତନ୍ମୟ ହୋଇ ମଧୁବାବୁଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରନ୍ତି । କି ଶାନ୍ତ ସରଳ ଭଷା ! କି ଆବେଗ ସେଥିରେ ! ଛଳଛଳ ନେତ୍ରରେ କି ତନ୍ମୟତା ! ସମବେତ ଶ୍ରୋତାମଣ୍ଡଳୀ ତାଙ୍କ ଭଷଣରେ ମନ୍ତ୍ରମୁଗଧ ହୋଇଯାନ୍ତି । 'ବାବା'ଙ୍କ ସେ ଭବାବେଶ ମୁଁ ଆଜିଯାଏ ଭୁଲିପାରି ନାହିଁ । କେବଳ ସେଇ "ମଧୁସ୍ମୃତି" ଦିବସଟିକୁ ପ୍ରତିବର୍ଷ ମୁଁ ଅପେକ୍ଷା କରିଥାଏ । ସେ ଦିବସଟି ଏଇଥିପାଇଁ ମୋ ମନରେ ଏକ ସ୍ୱତନ୍ତ୍ର ଶିହରଣ ଆଣେ ।

ଆହୁରି ମନେ ପଡ଼ିଯାଉଛି ସେ ପରିବାରରେ ପୂଜା ଉତ୍ସବ ଓ ଅନୁଷ୍ଠାନ ଇତ୍ୟାଦିର କଥା । ଗଣେଶପୂଜା, ସରସ୍ୱତୀପୂଜା ଓ କୁଆଁରପୂନେଇଁ ପୂଜାଉତ୍ସବଗୁଡ଼ିକ 'ବାବା' ଓ 'ବାପା'ଙ୍କ ପରିବାରରେ ମହାସମାରୋହରେ ପାଳିତ ହୁଏ । ପ୍ରତିବର୍ଷର ସେ ଦିନଗୁଡ଼ିକ କିପରି ପାଳନ କରଯାଏ ତାହା ଦେଖିବାର କଥା । ସବୁ ପୁଅଝିଅମାନେ ନବବସ୍ତ୍ର ପିନ୍ଧି ଭୋଗଥାଳି ଧରି ପବିତ୍ରଭାବରେ ପୂଜାସ୍ଥଳକୁ ଆସିବେ । 'ବାବା'ଙ୍କର ତଳମହଲାର ଶୋଇବାଘର ଧୁଆଧୋଇ କରି ପରିଷ୍କାର କରଯାଏ । ସମସ୍ତେ ସେଇଠି ଠୁଳ ହୁଅନ୍ତି । ବିଶେଷତଃ ଝିଅମାନଙ୍କର କି ଆଗ୍ରହ । ବୋଉ, ଲାବଣ୍ୟଅପା, ଗୌରୀଅପା ପୂଜାର ସମସ୍ତ କାର୍ଯ୍ୟ ଟିକିନିଖିକରି ବୁଝନ୍ତି । "ପିଲେ ବସ ସମସ୍ତେ ପାଟିକର ନାହିଁ । ବର୍ତ୍ତମାନ ପଣ୍ଡିତ ମହାଶୟ ଆସିବେ । ପୂଜାହେବ ।" ଆମେ ସବୁ ଛୋଟ ପିଲା ଚୁପଚାପ୍ ବସିଯାଉ । ଆସନ୍ତି ଆମର ଅପାମାନେ ଭୋଗଡାଲା ଧରି । କେତେ ଝିଅ । ସେ ସାହିର, ଏ ସାହିର, ତଳସାହିର, ପାଖପଡ଼ିଶା ଘରର କେତେ ଝିଅ । ଗୋଟାଏ କୌତୁକିଆ କଥା ମନେ ପଡୁଚି । ଥରେ 'ବାବା' ବାହାର ବରଣ୍ଡାରେ ବସି ସବୁପିଲାଙ୍କର ନାଁ ପଚାରନ୍ତି । ଝିଅମାନେ ସମସ୍ତେ ସେମାନଙ୍କର ନାଁ କହୁ କହୁ ବେଶୀ ସଂଖ୍ୟାରେ 'ବୁଢ଼ୀ' ନାଁ ବାହାରିଲା । 'ବାବା' କହିଲେ, "ଆରେ ଏଠି ତ ବେଶୀ ସଂଖ୍ୟାରେ 'ବୁଢୀ' ଅଛନ୍ତି ।" ହଠାତ୍ ଲାବଣ୍ୟଅପା ହସିଦେଲେ; କହିଲେ, "କିଏ କୋଉ 'ବୁଢ଼ୀ' ଜାଣିବା କେମିତି ?" ଗୌରୀଅପା ବୋଧହୁଏ କହିପକାଇଲେ, "ଯିଏ ଯୋଉ 'ବୁଢ଼ୀ' ତାଙ୍କ ବାପାଙ୍କ ନାଁର ପ୍ରଥମ ଅକ୍ଷରକୁ ଯୋଡ଼ି ଡାକିଲେ ଆଉ ଅସୁବିଧା ହେବନି..." ସେଇଆ ହେଲା । ତେଣିକି ଡାକ ଚାଲିଲା 'କୁ—ବୁଢ଼ୀ' (ସେ ସାଇର କୁଳମଣି ମହାନ୍ତିଙ୍କ ଝିଅ), 'ନେ—ବୁଢ଼ୀ' (ଆର ସାହିର ନେତ୍ରାନନ୍ଦବାବୁ ପୋଲିସ ଅଫିସରଙ୍କ ଝିଅ), 'ଗୋ—ବୁଢ଼ୀ' (ଆମ ସାନଅଜା 'ବାବା'ଙ୍କ ପଡ଼ିଶା ଆଦର୍ଶ ଶିକ୍ଷକ ଗୋପାଳଚରଣ ମହାନ୍ତିଙ୍କ ଝିଅ) ଇତ୍ୟାଦି ଇତ୍ୟାଦି । ଭାରି ମଜାଲାଗେ ଏଇ ନୂଆ ନାଁ ଗୁଡ଼ିକ ଶୁଣିବାକୁ । ସେଇ ଦିନଠୁ ସେମାନଙ୍କୁ ସେଇ ନାଁରେ ସମସ୍ତେ ଡାକିଲେ । ତା'ପରେ ଆସନ୍ତି ପଣ୍ଡିତ ମହାଶୟ ପୂଜାକରିବାକୁ । ତାଙ୍କ ନାଁଟି ଏବେ ଆଉ ମନେ ପଡୁନାହିଁ । ଆମେ କେହିକେହି ସାର୍ ମଧ୍ୟ ଡାକୁ । ଗୋରାହେଇ ଖୁବ୍ ଡେଙ୍ଗା, ଗୈରିକବସନ, ପାଚିଲାଆମ୍ବପରି ଚେହେରା । 'ବାବା' ତାଙ୍କୁ ଆସିଲାମାତ୍ରେ ପଚାରି ଦିଅନ୍ତି, "ଶୀଘ୍ର

ଶୀଘ୍ର ପୂଜାସାରନ୍ତୁ । ପିଲମାନେ ଉପାସରେ ଅପେକ୍ଷା କରିଛନ୍ତି ପରା...” ଖୁବ୍ ଧୁମ୍‌ଧାମ୍‌ରେ ପୂଜା ହୁଏ । ତା’ ପରେ ପତ୍ରପଡ଼େ । ଲବଣ୍ୟଅପା, ଗୌରୀଅପା, ପାଚକ ଯୋଗୀ, ସୁଧା ଇତ୍ୟାଦି ସମସ୍ତେ କେତେ ସରାଗରେ ବିଭିନ୍ନ ଖାଦ୍ୟଦ୍ରବ୍ୟସବୁ ପରଷି ଦିଅନ୍ତି । ଏମିତି ଲାଗେ ସତେ ଯେପରି ଆମେ ସମସ୍ତେ ଗୋଟିଏ ଏକାନ୍ନବର୍ତ୍ତୀ ପରିବାରର ଲୋକ । ‘ବାବା’ କାହାକୁ ଛାଡ଼ନ୍ତି ନାହିଁ, କହୁଥାନ୍ତି,“ରହ ପିଲେ ସମସ୍ତେ ଖାଇକରିଯିବ...” । ଭୂରି ଭୋଜନ ପରେ ସମସ୍ତେ ଘରକୁ ଫେରୁ ।

ଆଜି ମୋର ଏ ପରିଣତ ବୟସରେ ଏ ସବୁ କଥା ଭାବିଲାବେଳକୁ ମନରେ କୋହ ଆସୁଚି । ସେ ଘରେ ‘ବାବା’ ଓ ‘ବାପା’ଙ୍କର ସବୁବେଳେ ଡାକ ଶୁଭୁଥାଏ—‘ଆନନ୍ଦିଆ’, ‘ଯୋଗୀ’, ‘ସୁଧା’, ‘ଉତ୍ସବ’, ‘ମଧୁ’ ଇତ୍ୟାଦି । ସେ ସବୁ ଡାକ ଆଉ ନାହିଁ ।

ଆଜି ସେ ‘ବାବା’ ନାହାନ୍ତି । ସେ ‘ବାପା’ ନାହାନ୍ତି । ‘ବୋଉ’ ବି ନାହାନ୍ତି । ପିଲମାନେ ସବୁ ଯାଇ ବିଭିନ୍ନ ସ୍ଥାନରେ କିଏ କୋଉଠି ଅଛନ୍ତି । ସେ ଘର ଆଜି ଶ୍ରୀହୀନ ଦିଶୁଛି । ସେ ବିଶ୍ୱସ୍ତ ଅନୁଚରମାନେ ମଧ୍ୟ ଆଜି ନାହାନ୍ତି, ସେ ଆନନ୍ଦ, ଉତ୍ସବ, କୋଳାହଳ ଆଉ ନାହିଁ । ସବୁ ନୀରବ, ନିସ୍ପନ୍ଦ । କର୍ପୂର ଉଡ଼ିଯାଇଛି କେବଳ ପଡ଼ିରହିଛି କନା । ମୋର ସେ ଅଜା ଓ ଆଈମାନେ ମଧ୍ୟ ଆଉ ନାହାନ୍ତି । ମୁଁ ବି ଏ ମୋର ଲମ୍ବା ଜୀବନର ବହୁଘାତ ପ୍ରତିଘାତ ଭିତରେ କ୍ଲିଷ୍ଟ ପିଷ୍ଟ ହୋଇ କଟକରେ ମୋର ଲୀଳାଖେଳା କୋଉକାଳୁ ଛାଡ଼ି ଆଜି ଆସି ଭୁବନେଶ୍ୱରରେ ମୋର କର୍ମକ୍ଷେତ୍ର ବାଛି ନେଇଛି । ଖୁବ୍ କ୍ୱଚିତ୍ କେବେ କେବେ ମାମୁ ଘରକୁ ଯାଏ । ଆଉ ଯେବେ ଯାଏ ‘ବାବା’ ‘ବାପା’ଙ୍କ ଭିଲା (Villa) ର ଦ୍ୱାରଦେଶରେ ନୀରବରେ କ୍ଷଣେ ଠିଆହୋଇ ଭିତରକୁ ଟିକିଏ କରୁଣ ଦୃଷ୍ଟି ପକାଏ । ଭିତରେ ସମ୍ପୂର୍ଣ୍ଣ ନୀରବତା ! ତାଆରି ଭିତରୁ କାହାର କ୍ଷୀଣ କାଶର ଅସ୍ପଷ୍ଟ ଶବ୍ଦ ପବନରେ ଭାସିଆସେ । ବୋଧହୁଏ ଶେଷବିଶ୍ୱସ୍ତ ଅନୁଚର ‘ମଧୁ’ଙ୍କର କି କଣ ? ଦାଣ୍ଡ ଅଗଣା ଭିତରେ ସେ ପ୍ରକାଣ୍ଡ ବୁଢ଼ା ବେଲଗଛଟା ପତ୍ରଝଡ଼ାଦେଇ ମୂକସାକ୍ଷୀ ପରି ଠିଆ ହୋଇଛି । ଜରାଜୀର୍ଣ୍ଣ ଗେଟ୍‌ଉପରେ ସେଇ ଶୃଙ୍ଖଳ ମଧୁମାଳତୀ ଲତାଟା ଜଙ୍ଗଲିଆ ହୋଇ ପଡ଼ିଅଛି । ତାଆରି ଭିତରେ ଫୁଲୁଫୁଲିଆ ପବନ ବହି ଯାଉଚି ସାଇଁ... ସାଇଁ ।

ଆଉ ସତେ ଯେପରି ତାଆରି ଭିତରୁ ବାରମ୍ବାର ଧୀରେ ଧୀରେ ପ୍ରତିଧ୍ୱନିତ ହୋଇଆସି ମୋ କାନରେ ବାଜିଯାଏ ସେଇ ସରଗ ଭରା ଡାକ, ସବୁପିଲାଙ୍କର ସେ ଅନ୍ତରଭରା ଡାକ, ମୋର ସେଇ ପୁରୁଣା ମମତାବୋଳା ଡାକ— "ବାବା", "ବାପା" !!

—୦—

କ୍ୱାଟର ନଂ ୪୦/୨ ଟାଇପ୍-ଫୋର୍-ଏ
ଅଶୋକ ନଗର, ଭୁବନେଶ୍ୱର-୯

# ମୋ ବାପା

**ଗୌରୀ ମହାନ୍ତି**

**ଅ**ନେକ ବର୍ଷ ତଳର କଥା, ୧୯୩୪ ମସିହା । ବାପା ଥାଆନ୍ତି ଦିଲ୍ଲୀରେ । ଆମେ ସବୁ ଥାଉ ତାଙ୍କ ପାଖରେ । ମୋତେ ସେତେବେଳେ କେତେ ବା ବୟସ ! ଆଠ ବା ନଅ ବର୍ଷ ବୟସର ଝିଅ ମୁଁ । ପିଲାଳିଆ ସଉକରେ ବୋଉଙ୍କ ସାଙ୍ଗରେ ଅଝଟ ଲଗାଇ କିଣି ଦେଇଥିଲି ଦୁଇଖଣ୍ଡ ବିଲାତି ଶାଢ଼ୀ । ବିଲାତି କି ଦେଶୀ ବୁଝି ନ ଥିଲି ସେତେବେଳେ । ବାପାଙ୍କ ନଜରରେ କିନ୍ତୁ ଶାଢ଼ୀ ଦୁଇଟି ପଡ଼ିଗଲା । ଯିଏ ବାହାରେ ବିଦେଶୀ ବର୍ଜନ ଆନ୍ଦୋଳନ କରୁଛନ୍ତି ଘରେ ଏ ବ୍ୟତିକ୍ରମ ସହନ୍ତେ କିପରି ! ସାରାଦିନ ତାଙ୍କର ଉପାସରେ କଟିଥିଲା । ସେହି ଘଟଣାଟି ମନରେ ମୋର ରଖି ଦେଇଥିଲା ଗଭୀର ଦାଗ । ବିଦେଶୀ ସରକାର ସାଙ୍ଗରେ ସାଲିସ ନ କରିବାର ଏକ ଦୃଢ଼ ସଂକଳ୍ପ ମନରେ ଗଢ଼ି ଉଠିଲା ସେହି ପିଲାଦିନୁଁ ।

ଆଉ ଦିନକର କଥା । ସ୍କୁଲ ଯିବାକୁ ବାହାରିଥାଏ । ବାପାଙ୍କ ସାମ୍ନା ଦେଇ ଗଲାବେଳେ ତାଙ୍କ ନଜର ପଡ଼ିଗଲା ମୋ ମୁହଁ ଉପରେ । ସେଦିନ କୁଙ୍କୁମ ଟୋପାଟା ଲଗେଇବାକୁ ଭୁଲି ଯାଇଥିଲି । ଏହି ଛୋଟ ବ୍ୟତିକ୍ରମ ସେ କିନ୍ତୁ ସହିପାରି ନ ଥିଲେ । ଘର ଭିତରକୁ ଫେରିଯାଇ ଟୋପା ଲଗାଇ ମୋତେ ସ୍କୁଲ ଯିବାକୁ ହୋଇଥିଲା । ବିଲାତ ଫେରନ୍ତା ବାପା ମୋର, କିନ୍ତୁ ଏଇ ଓଡ଼ିଆ ସଂସ୍କୃତି ପ୍ରତି ଏତେ ସଚେତନ ଥିଲେ ଯେ, ସେ କଥା ଏବେ ଭାବିଲେ ଓ ଆଜିର ପାଠ ପଢୁଆ ପିଲାଙ୍କ ଚାଲିଚଳନ ଦେଖି ତା'କୁ ତୁଳନା କଲେ ଆଶ୍ଚର୍ଯ୍ୟ ଲାଗେ ।

ବାପା ପ୍ରାୟ ରହୁଥାନ୍ତି ଦିଲ୍ଲୀରେ । ଆମେ ଆମ ପାଠ ପଢ଼ା ପାଇଁ ବୋଉଙ୍କ ପାଖରେ କଟକରେ ରହୁଥାଉ । ବାପା ଯେତେବେଳେ କଟକ ଆସନ୍ତି ଚହଳ ପଡ଼ିଯାଏ ଆମ ଘରେ । ସଜଡ଼ା ସଜଡ଼ି ଭିତରେ ଘରର ରୂପ ବଦଳି ଯାଏ । ବାପାଙ୍କ ସାଙ୍ଗରେ ଆମେ ସମସ୍ତେ ବସି ଖାଇବୁ ଏଇଟା ଥିଲା ତାଙ୍କର

ବଡ଼ ସଉକ । ସେହି ଖାଇବା ଭିତରେ ସେ ଆମକୁ କେତେ କଥା ଶିଖାଉ ଥିଲେ । ଏକାଠି ବସି ଖାଇଲାବେଳେ କେମିତି ଆଚରଣ କରିବାକୁ ହୁଏ, ନିଜ ଖାଇବା ସରିଗଲେ ମଧ୍ୟ ସମସ୍ତଙ୍କର ସରିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼େ ଏବଂ ଅନ୍ୟମାନଙ୍କ ରୁଚି ଅରୁଚି ପ୍ରତି ଖିଆଲ ରଖିବାକୁ ହୁଏ—ଏ ସବୁ କଥା ଶିଖିଥିଲୁ ସେଇ ପିଲାଦିନୁଁ ବାପାଙ୍କର କଡ଼ା ଶୃଙ୍ଖଳା ଭିତରେ ।

ସେଇ ପିଲାଦିନର ଆଉ ଗୋଟିଏ ମଧୁର ସ୍ମୃତି । ବାପା ଓ ବଡ଼-ବାପା ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ପାଇଁ ଆମ କଟକ ଉଗରପଡ଼ା ଘରକୁ ମଝିରେ ମଝିରେ ଆସୁଥିଲେ ଅନେକ ବଡ଼ ବଡ଼ ନେତା । ପଣ୍ଡିତ ଜବାହର-ଲାଲ ନେହରୁ ଥରେ କଟକ ଆସିଥାନ୍ତି । ସନ୍ଧ୍ୟାରେ ତାଙ୍କର ଆମ ଘରେ ନିମନ୍ତ୍ରଣ ଥାଏ । ସେ ଯେତେବେଳେ ଆସି ପହଂଚିଲେ ଫୁଲମାଳ ତାଙ୍କ ବେକରେ ଦେବାକୁ ଯାଇ ମୋର ହାତ ପାଇ ନ ଥିଲା । ସେ ନିଜେ ମୁଣ୍ଡ ନୁଆଁଇ ମାଳଟି ଗ୍ରହଣ କରିଥିଲେ । ଆଜି ଭାବେ ସେମାନେ କେତେ ବଡ଼ ପୁଣି କେଡ଼େ ମହାନ । ବାପାଙ୍କ ଯୋଗୁଁ ସେମାନଙ୍କ ସଂସ୍ପର୍ଶରେ ଆସିବାର ସୌଭାଗ୍ୟ ଜୀବନରେ ମିଳିଥିଲା ।

ତା'ପରର କେତୋଟି ଘଟଣା । ବାଲ୍ୟ ଜୀବନ ବିତି ଯାଇଥିଲା ଏମିତି କେତେ ମଧୁର ସ୍ମୃତିକୁ ସମ୍ବଳ କରି । ବାହାଘର ମୋର ଖୁବ୍ ଅଳ୍ପ ବୟସରେ ହୋଇଥିଲା । ବିବାହ ସ୍ଥିର ହେଲା ପରେ ଶ୍ୱଶୁର କହିବାର ଶୁଣି-ଥିଲି, ମୁଁ ବୋଧହୁଏ ତାଙ୍କ ସଂସାରରେ ଚଳିପାରିବି ନାହିଁ । ବି. ଦାସଙ୍କ ଝିଅ । ସେତେବେଳେ ବଡ଼ ବାପା ସ୍ୱାମୀ ବିଚିତ୍ରାନନ୍ଦ ଦାସ କହିଥିଲେ,"ସେ ବି. ଦାସର ଝିଅ । କିନ୍ତୁ ଯେ ମୋ ପାଖରେ ମୋଟା ଖାଇ ମୋଟା ପିନ୍ଧି ବଢ଼ିଛି ସେ ସବୁଠି ଚଳି ପାରିବ ।" ସତରେ ମୁଁ ତାଙ୍କ ପାଖରେ ମୋଟା ଖାଇଥିଲି କି ନାହିଁ ଜାଣିନି, କିନ୍ତୁ ତାଙ୍କର ସେହି କଥା ପଦକ, ମୋ ମନରେ ଆଣିଥିଲା ସବୁ ଜାଗାରେ ନିଜକୁ ଖାପ ଖୁଆଇ ଚଳିବାର ଦୃଢ଼ତା । ବାପା, ବଡ଼ବାପାଙ୍କର ଏହି ଆଦର୍ଶ ଅନୁସରଣ କରି ପାରିବାରିକ ଜୀବନରେ ମୁଁ କେବେ ହାରିଯାଇନି ବୋଲି ମୋର ବିଶ୍ୱାସ ।

ବାହାଘର ମୋର ହୋଇଗଲା । ଆସିଲି ନୂଆ ସଂସାରକୁ । ଶାଶୁ, ଶ୍ୱଶୁର ମୋର ବାପାଙ୍କଠାରୁ ବୟସରେ ଅନେକ ଛୋଟ ଥିଲେ । କିନ୍ତୁ

ସେମାନଙ୍କୁ ସମୁଦୀ ସମୁଦୁଣୀ ଭାବରେ ଗ୍ରହଣ କରି ନେଇ ହାସ ପରିହାସ କରିବାରେ ବାପା କେବେ ସଙ୍କୋଚ ବୋଧ କରୁ ନ ଥିଲେ । ମନେ ପଡ଼େ ଗୋଟିଏ କଥା—ବାପାଙ୍କର ଚିଠି ଶାଶୁଙ୍କ ପାଖକୁ । ଉପରେ ସମ୍ବୋଧନ କରିଥାନ୍ତି, "ରୁକ୍ମିଣୀ ପତିଙ୍କର ଶ୍ରୀମତୀ ସତ୍ୟଭାମା ଦେବୀଙ୍କୁ ଜୁହାର ।" ବୋଉଙ୍କ ନାଁ ରୁକ୍ମିଣୀ ଓ ମୋ ଶାଶୁଙ୍କ ନାଁ ସତ୍ୟଭାମା । କିପରି ସହଜ ସରଳ ରସିକତା । ଦେଶର ବହୁ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ଭିତରେ ବୁଡ଼ି ରହିଥିବା ଗୋଟିଏ ଜଞ୍ଜାଳି ମଣିଷ ଭିତରେ ମଧ୍ୟ ଲୁଚି ରହିଥିଲା ଏପରି ଗୋଟିଏ ରସିକ ମଣିଷ ।

ନିଷ୍ଠାପର କଂଗ୍ରେସ କର୍ମୀ ଭାବରେ ତଥା ମହାତ୍ମାଗାନ୍ଧୀଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ବାପା ଥିଲେ ହରିଜନ ଆନ୍ଦୋଳନର ପୂର୍ଣ୍ଣ ସମର୍ଥକ । ହରିଜନମାନଙ୍କ ପାଇଁ ମନ୍ଦିର ପ୍ରବେଶ ବାରଣ ଥିବାରୁ ସେ କେବେ ମନ୍ଦିର ଭିତରକୁ ଯାଉ ନ ଥିଲେ । କିନ୍ତୁ ପୁରୀରେ ସ୍ନାନଯାତ୍ରା ଦିନ ସେ ବାହାରୁ ଜଗନ୍ନାଥଙ୍କ ଦର୍ଶନ କରୁଥିଲେ । ମାତ୍ର ବୋଉଙ୍କ ପୂଜା ପାଠରେ ସେ କେବେ ବାଧା ଦେଉନଥିଲେ, ବରଂ ସାହାଯ୍ୟ କରୁଥିଲେ । ବୋଉ ପ୍ରତିଦିନ ସକାଳେ ଗାଧୋଇ ସାରି ତୁଳସୀ ଚଉରା ପାଖରେ ପୂଜା ନ କଲେ ଜଳ ସ୍ପର୍ଶ କରୁ ନ ଥିଲେ । ସେଥିପାଇଁ ବାପା ବୋଉଙ୍କୁ ନେଇ ଦିଲ୍ଲୀ ଗଲେ ଆଗ ତୁଳସୀ ଗଛ ଯୋଗାଡ଼ କରୁଥିଲେ ।

ଏମିତି ଛୋଟ ଛୋଟ କେତେ ଘଟଣା, କହି ବସିଲେ ସରିବ ନାହିଁ । ଆଜି ମନେ ପଡୁଛି, ମୋ ବାହାଘରର କେତେ ମାସ ପରର କଥା । ବାପା ଦିଲ୍ଲୀରୁ କଟକ ଆସିଥାନ୍ତି । ସାଙ୍ଗରେ ଆଣିଥାନ୍ତି ହାଲୁଆ ସୋହନ୍ ଓ ପେସ୍ତା ବର୍‌ଫି । ବୋଉ ସେତେବେଳେ ପୁରୀରେ ଥାଆନ୍ତି । ବାପା ମିଠା ସବୁ ମୋ ଶାଶୁ ଘରକୁ ପଠାଇ ଦେଲେ । ପରେ ଯେତେବେଳେ ବାପାଙ୍କୁ ଦେଖା କରିବାକୁ ଗଲି ବାପା ଆଲମାରୀରୁ ଦୁଇଟି ପେସ୍ତା ବର୍‌ଫି କାଢ଼ି ମୋ ପାଟିରେ ଖୁଆଇ ଦେଇଥିଲେ । ମୋ ପାଇଁ ସେ ବର୍‌ଫି ଦୁଇଟି ଆଗରୁ କାଢ଼ି ରଖିଥିଲେ । ମୋତେ କହିଲେ, "ତୁ ବର୍‌ଫି ଭଲ ପାଉ ବୋଲି ତୋ ପାଇଁ ରଖିଥିଲି । ତୋର ବହୁ କୁଟୁମ୍ବୀ ଶାଶୁ ଘର ଭିତରେ ତୋ ଭାଗରେ କାଳେ ନ ପଡ଼ିଥାଆନ୍ତା ।" ଏହି ସ୍ନେହ, ଆଦର ଆଜି ସ୍ୱପ୍ନ । ସେଦିନ ଏ କଥାରେ ଯେତେ ଗୁରୁତ୍ୱ ଦେଇ ନ ଥିଲି, ଆଜି ପରିଣତ ବୟସରେ ସେ କଥା ଭାବିଲା ବେଳକୁ ଆଖିରେ ଲୁହ ଗଳି ଆସୁଛି ।

ଆଉ ଗୋଟିଏ ଘଟଣା ନ ଲେଖି ରହି ପାରୁ ନାହିଁ । ୧୯୪୧-୪୨ ମସିହା ବେଳକୁ ବୋମା ପଡ଼ିବ ବୋଲି ସମସ୍ତେ କଟକ ଛାଡ଼ି ଗ୍ଲି ଯାଉଥାନ୍ତି । ଆମେ ମଧ୍ୟ ସେତେବେଳେ ଆସି ପୁରୁଣା ଭୁବନେଶ୍ୱରରେ ରହୁଥାଉ । ପୁଲିସ ସବୁଆଡ଼େ ଜଗି ରହିଥାଏ । ଆମ ଘର ଗ୍ରରି ପାଖରେ ମଧ୍ୟ । ସେହି ସମୟରେ ବାପାଙ୍କର ବ୍ଲଡ୍ ପ୍ରେସର୍ ବଢ଼ି ଯାଇ ନାକ ବାଟେ ବହୁତ ରକ୍ତ ପଡୁଥାଏ । ସେ ପ୍ରାୟ ବିଛଣାରେ ପଡ଼ି ରହି ଥାଆନ୍ତି । ମାଳତୀ ଦେବୀ ଆସି ଦିନେ ରାତିରେ ଆମ ଘରେ ଲୁଚି ଥାଆନ୍ତି । ରାତିସାରା ବସି ମୁଁ ତାଙ୍କ ସାଙ୍ଗରେ ପ୍ରଗ୍ରର ପତ୍ର କପି କରିବାରେ ବ୍ୟସ୍ତ ଥାଏ । ବାପାଙ୍କର ସେମାନଙ୍କ ପ୍ରତି ଭିତିରିଆ ସମର୍ଥନ ଥାଏ । କିନ୍ତୁ ଏ ପଟେ ଝିଅ ପ୍ରଗ୍ରର ପତ୍ର ଲେଖୁଛି ଏବଂ ଧରା ପଡ଼ିଲେ ଆରେଷ୍ଟ ହେବ, ଏହି ଚିନ୍ତାରେ ବାପାଙ୍କୁ ମୋଟେ ନିଦ ହେଉ ନ ଥାଏ । ବାରଣ୍ଡାରେ ସେ ରାତିସାରା ଏପଟ ସେପଟ ହେଉଥାଆନ୍ତି । ଭୋର ଭୋର ଆମର ଜଣେ ପୁରୁଣା ଗ୍ରକର ଶଗଡ଼ ଗାଡ଼ିରେ ମାଳତୀ ଦେବୀଙ୍କୁ ନେଇ କାଠଯୋଡ଼ି କୂଳରେ ଛାଡ଼ି ଆସିଲୁ ଏବଂ ତା'ପରେ ସେ ଆରେଷ୍ଟ ହେଲେ ।

ଏ ସବୁ ଘଟଣା ମୋ ଜୀବନ ପଥର ଗୋଟିଏ ଗୋଟିଏ ଆଲୋକ ସ୍ତମ୍ଭ । ଗୃହିଣୀ ଜୀବନର ନାନା ଝଞ୍ଜାଳ ଭିତରେ କେବେ ଯଦି ନିଜ ଭିତରକୁ ନିରୀକ୍ଷଣ କରିବାର ସୁଯୋଗ ପାଏ, ଦେଖେ ସେ ସବୁ ସ୍ମୃତି ଏବେ ବି ଜାଜ୍ୱଲ୍ୟମାନ । ମୋ ବାପା, ବଡ଼ବାପାଙ୍କ ଜନ୍ମ ଶତ ବାର୍ଷିକୀରେ ତାଙ୍କର ଅମର ଆତ୍ମା ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ରହୁଛି ।

—o—

୧୦୨, ସୂର୍ଯ୍ୟନଗର
ଭୁବନେଶ୍ୱର—୩

## SWAMI BICHITRANANDA DAS

Born on May 14, 1885 in village Kurunjipur in the Puri district of Orissa. Father's name : Sri Ramchandra Das. Graduated in Law from Calcutta University after passing Matriculation examination from Ravenshaw Collegiate School, Cuttack in first division. Joined the national movement for Independence as a student. Became an active member of Utkal Youth Association under the leadership of Utkal Gaurav Madhusudan Das, one of the main architects of moden Orissa. After finishing education he joined the Bar as a junior of Madhu Babu, as he was popularly known and also became his close political associate. Joined the non-co-operation movement in 1920 responding to the call of Mahatma Gandhi, in 1920. Played an active and prominent role in the creation and unification of Orissa as a separate province, under the aegis of Utkal Sammilani of which he became the President for one term. Was elected as a member of the first legislative assembly of Orissa in 1936 and was leader of opposition for some time when Congress was out of power. Attained a pre-eminent position in his profession too and became the first Advocate General of Orissa after Independence. Also became the President of Orissa High Court Bar Council. Apart from his outstanding contributions in the political and legal fields he was particularly known for his extraordinary generosity in helping the poor and needy, and his devoted social service. The Orissa Anathashram (Home for widows and orphans), the first of its kind in Orissa was founded by him, and his organisation of relief to the victims of flood and famine in Orissa brought him praise from all quarters including Thakkar Bappa, who conferred on him the title of Swamiji. Eradication of leprosy was another social

activity with which he was intimately associated. He also played an active role in the Promotion of Hindi as the national language and was the life-long President of the Rashtrabhasa Prachar Samiti in Orissa. Was conferred the title of "Padma Shri" by the President of India. Died in his 91st year on 10th October, 1975.

—0—

## SRI BHUBANANANDA DAS

Born on May 14, 1885 in village Kurunjipur in the Puri district of Orissa. Father's name : Sri Ramchandra Das. Graduated in Civil Engineering from Sibpur College, Bengal after passing Matriculation from Ravenshaw Collegiate School, Cuttack in First Division and Intermediate in Science from Ravenshaw College, Cuttack. Went to United Kingdom for higher studies and graduated in Electrical Engineering from Glasgow University. On return from U. K. took up a lucrative job in Bombay but resigned it in protest against racial discrimination and joined the Indian National Congress. Was the sole representative from Orissa in the Congress session of 1921. Became a member of the Central Legislative Assembly in Delhi in 1923 and continued till after Independence when he became successively a member of the Constituent Assembly, Lok Sabha and Rajya Sabha. He was a member of the Rajya Sabha at the time of his death in 1958. His long and conspicuous contribution to the proceedings of the Supreme legislative body in the country, including the piloting of important bills, chairmanship of the Public Accounts Committee etc. earned him the popular title of "Father of the House". As the first chairman of the public Accounts Committee and for successive terms he played a pioneering role in placing the practices and procedure of parliamentary financial control on a sound footing. Was also for some time the Chief whip of the Congress Party in Parliament and its Treasurer. Apart from being a veteran parliamentarian, his contributions, in association with his brother Swami Bichitrananda Das to the creation and unification of Orissa as a separate province were also outstanding. Like his brother he became the President of the Utkal Sammilani for one term. Most importantly he pleaded the cause of Orissa as a participant in the Round

## "BADA AJA"

Bada Aja was handsome like his brother but more easily approachable. Memories of Bada Aja date to a later period. He was affectionate and loved to chat with us. He told stories of greatmen. It was wonderful to hear him because he himself was great and never told us so.

He owned a huge box of Homoeopathic medicines which he gave to anyone who came to him for them. Every day a few hours were kept aside so the poor and distressed could come to him for sympathy and help. We the children were very impressed with the medicine box and constantly kept feigning illnesses just to get the sweet taste of the globules & tablets.

Later memories date back to when I was in college. Then he was the grandchild and I the grandmother. Whenever I visited him, I'd ask about his health and he'd show me his gout striken big toe. I'd touch and stroke his toes and he'd say he was feeling better with my healing touch.

He would praise me to the skies. He'd attribute his own qualities of generosity, kindness, loving nature etc. ete. to me. I'd feel very embarrassed and guilty for I was not worthy of such praise. However coming from such a great soul his faith in me would build my self-esteem and kindle the desire to be good even if momentarily. I have preserved one such letter and even now it does wonders to my ego.

—0—



ସ୍ୱାମୀ ବିଚିତ୍ରା ନନ୍ଦ ଦାସଙ୍କ ସହିତ ତାଙ୍କର ଏକମାତ୍ର କନ୍ୟା ଲାବଣ୍ୟପ୍ରଭା ଦେବୀ, ଭୁବନାନନ୍ଦ ବାବୁଙ୍କ ବଡ଼ପୁଅ ଓ ତାଙ୍କ ପୋଷ୍ୟପୁତ୍ର ଚିତ୍ତ ରଞ୍ଜନ ଦାସ, ବଡ଼ଝିଅ କମଳା ମହାନ୍ତି, ସାନ ଜ୍ୱାଇଁ ଜ୍ଞାନ ରଞ୍ଜନ ଦାସ ଓ ବଡ଼ ଜ୍ୱାଇଁ ହେମନ୍ତକୁମାର ମହାନ୍ତି ।



ବିଦେଶ ଫେରନ୍ତା ଇଞ୍ଜିନିୟର ଶ୍ରୀ ଭୁବନା ନନ୍ଦ ଦାସ ।



ଡଃ କେ.ସି. ନିୟୋଗୀ ଓ ତାଙ୍କର ସହଧର୍ମିଣୀଙ୍କ ସହ ଦୁଇଭାଇ



ଭାରତୀୟ ସାମ୍ବାଦିକତାର ଜଣେ ପଥପୁରୋଧା ସାର୍ ଉଷାନାଥ ସେନ୍‌ଙ୍କ ସହ ଦୁଇଭାଇ



ଅନ୍ତିମ ଶଯ୍ୟାରେ ଶ୍ରୀମତୀ ରୁକ୍ମିଣୀ ଦେବୀ । ତାଙ୍କ ପାଖରେ ପୁଅ ମୋତି ରଞ୍ଜନ ଦାସ



ଭୁବନେଶ୍ୱର ସୂଚନାଭବନଠାରେ ଅନୁଷ୍ଠିତ ବିଚିତ୍ରାନନ୍ଦ — ଭୁବନାନନ୍ଦ ଶତବାର୍ଷିକୀ ସମାରୋହ ପାଳନ ଅବସରରେ ରାଜ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଭାଷଣ ଦେଉଛନ୍ତି । ମଞ୍ଚାସୀନ ମାନଙ୍କ ମଧ୍ୟରେ_ ଡଃ ହରେକୃଷ୍ଣ ମହତାବ ସ୍ୱର୍ଗୀୟା ରମା ଦେବୀ ଓ ଶ୍ରୀ ମନ ମୋହନ ଚୌଧୁରୀ ଓ ଶ୍ରୀ ହେମନ୍ତ କୁମାର ମହାନ୍ତି

